# ଉ ତ୍ତ ର ଣ



ଓଡ଼ିଆ ସାହିତ୍ୟ ବିଭାଗ

କେନ୍ଦ୍ରାପଡ଼ା ମହାବିଦ୍ୟାଳୟ

# ଉତ୍ତରଣ

ଚତୁର୍ଥ ସଂଖ୍ୟା

୧୯୭୧

ଓଡ଼ିଆ ସାହିତ୍ୟ ପରିଷଦ
କେନ୍ଦ୍ରାପଡ଼ା ମହାବିଦ୍ୟାଳୟ

## ଓଡ଼ିଆ ବିଭାଗର ଅଧ୍ୟାପକବୃନ୍ଦ

ଶ୍ରୀ ବ୍ରହ୍ମାନନ୍ଦ ଦାସ

ଶ୍ରୀ କିଶୋର ଚନ୍ଦ୍ର ସାହୁ

ଶ୍ରୀ ଭବଗ୍ରାହୀ ଭୂୟାଁ

ଶ୍ରୀ କାର୍ତ୍ତିକେଶ୍ୱର ସାହୁ

ଶ୍ରୀ ରଘୁନାଥ ମିଶ୍ର

ଶ୍ରୀ ରମେଶଚନ୍ଦ୍ର କର

*

# ସଂପାଦକୀୟ-

ବାସ୍ତବରେ କାବ୍ୟ, ସଙ୍ଗୀତ ଓ ଚିତ୍ରକଳା ପରସ୍ପର ନିବିଡ ଭାବରେ ସଂପୃକ୍ତ । ସମୃଦ୍ଧ ଫରାସୀ ସିମ୍ବଲିଷ୍ଟ କବିଗଣ କାବ୍ୟକୁ ସଙ୍ଗୀତର ନିକଟବର୍ତ୍ତୀ କରିଯାଇଛନ୍ତି । ପ୍ରଖ୍ୟାତ କବି ର୍ଯାଁବୋ ସ୍ୱରର ବର୍ଣ୍ଣ ଆବିଷ୍କାର କରିଥିଲେ ।‹ ପ୍ରସିଦ୍ଧ ଫରାସୀ ଇମେଜିଷ୍ଟ କବି ଗଣ ଆଜୀବନ ସାଧନା କରି କବିତାରେ କେତୋଟି ନୂତନ ଓ ବଳିଷ୍ଠ ବାଣୀମୂର୍ତ୍ତି ପ୍ରତିଷ୍ଠା କରି ଯାଇଛନ୍ତି । ଏଣୁ ଦେଖାଯାଏ, ପାଶ୍ଚାତ୍ୟ ବିଖ୍ୟାତ କବିଗଣ ସମସାମୟିକ ଖ୍ୟାତିସମ୍ପନ୍ନ ଚିତ୍ରକଳାକାର ଓ ସଙ୍ଗୀତଜ୍ଞଙ୍କସହ ବନ୍ଧୁତ୍ୱ ରଖି ଆଆନ୍ତି । ସାହିତ୍ୟର ବିଭିନ୍ନ ଦର୍ଶନ ବା ବାଦ ସାଧାରଣତଃ ଚିତ୍ରକଳାର ବିଭିନ୍ନ ବାଦରୁହିଁ ଗୃହୀତ ହୋଇଥାଏ ।

ଏହା ସାମ୍ପ୍ରତିକ ଓଡ଼ିଆ କବିମାନଙ୍କର ସ୍ମରଣରେ ରଖିବା ଉଚିତ । କାବ୍ୟାନୁଭୂତିକୁ ଯେ ସରଳଭାବେ ଚିତ୍ରକଳା ଓ ସଙ୍ଗୀତର ମାଧ୍ୟମରେ ଅନୁଭୂତି ନିକଟରେ ପହଞ୍ଚାଇ ପାରିବ, ସେହି ହେବ ଏ ଜାତିର ସର୍ବଶ୍ରେଷ୍ଠ କବି ନଚେତ୍ ଯେତେ ଯୁକ୍ତି ବାଢ଼ିଲେ ମଧ୍ୟ ସମସ୍ତ ସାଧନା ତାର ଅରଣ୍ୟରୋଦନରେ ପରିଣତ ହେବ । ପାଠକର ଚିନ୍ତାପାଇଁ ବୌଦ୍ଧିକତା, ପ୍ରାଣ ପାଇଁ ସଙ୍ଗୀତ ଓ ଚକ୍ଷୁପାଇଁ ଚିତ୍ରକଳା ଯେ ଏକସମୟରେ ରଚନା ମଧ୍ୟରେ ସୃଷ୍ଟିକରି ପାରିବ, ତାଙ୍କୁ ମହାନ ସାହିତ୍ୟ ସାଧକ ବା ଆଉ କିଏ ଆଇ ପାରେ ?

## ଉତ୍ତରଣ

୧୯୭୬ ମସିହାରେ ଏହାର ଜନ୍ମ । ବହୁ ପ୍ରତିକୂଳ ସମସ୍ୟା ସତ୍ତ୍ୱେ ଅଧ୍ୟାପକ ଶ୍ରୀ କିଶୋରଚନ୍ଦ୍ର ସାହୁ ଏବଂ କେତେକ ଉତ୍ସାହୀ ଯୁବକଙ୍କ ଉଦ୍ୟମରେ ଏବର୍ଷ ଏହାର ୪ର୍ଥ ,ସଂଖ୍ୟା ଆଲୋକାଭିମୁଖୀ ହୋଇ ପାରିଛି ଏବଂ ଏହାର ମୁଦ୍ରାକର ଭାବରେ କଳ୍ପତରୁ ପ୍ରେସ, ବହୁତ ଯତ୍ନ ନେଇଛନ୍ତି । ସେମାନଙ୍କୁ ଧନ୍ୟବାଦ ଜଣାଇ ରହୁଛୁ ।

ବ୍ରହ୍ମାନନ୍ଦ ଦାସ
ସମ୍ପାଦକ

# ପରିଷଦର ବିବରଣୀ

ଚଳିତ ବର୍ଷ ପାଇଁ ଶ୍ରୀ ଧନେଶ୍ୱର ସାହୁ ସମ୍ପାଦକ ଓ ବିଜୟକୁମାର ମହାପାତ୍ର ସହସମ୍ପାଦକ ରୂପେ ନିର୍ବାଚିତ ହେଲେ । ପରିଷଦ ତରଫରୁ କବିତା, କ୍ଷୁଦ୍ରଗଳ୍ପ ଓ ପ୍ରବନ୍ଧ ପ୍ରତିଯୋଗିତା ହୋଇଥିଲା । କବିତାରେ ଶ୍ରୀଦୀନବନ୍ଧୁ ପ୍ରଧାନ, (୨ୟ ବାର୍ଷିକ କଳା) ପ୍ରଥମ ଓ ଶ୍ରୀବିଜୟ କୁମାର ମହାପାତ୍ର (୧ମ ବାର୍ଷିକ କଳା) ଦ୍ୱିତୀୟ, କ୍ଷୁଦ୍ରଗଳ୍ପରେ ଶ୍ରୀପ୍ରଫୁଲ୍ଲ କୁମାର ଦାସ (୨ୟ ବାର୍ଷିକ କଳା) ପ୍ରଥମ ଓ ଶ୍ରୀପ୍ରଦୀପ୍ତ କୁମାର ପତି (୧ମ ବାର୍ଷିକ କଳା) ଦ୍ୱିତୀୟ; ପ୍ରବନ୍ଧରେ ଶ୍ରୀ ନରେନ୍ଦ୍ରକୁମାର ପଟ୍ଟନାୟକ (୩ୟ ବାର୍ଷିକ କଳା) ପ୍ରଥମ ଓ ଶ୍ରୀ ଅଲେଖଚନ୍ଦ୍ର ପଣିଗ୍ରାହୀ ୧ମ ବାର୍ଷିକ ବିଜ୍ଞାନ) ଏବଂ ଶ୍ରୀ ପରମେଶ୍ୱର ସ୍ୱାଇଁ (୨ୟ ବାର୍ଷିକ କଳା) ଉଭୟେ ଦ୍ୱିତୀୟ ସ୍ଥାନ ଅଧିକାର କରି ସାଫଲ୍ୟ ଅର୍ଜନ କରିଛନ୍ତି ।

ପରିଷଦର ମୁଖପତ୍ର 'ଉତ୍ତରଣ' ପ୍ରକାଶ କରିବା ନିମନ୍ତେ ଉଦ୍ୟମ କରାଗଲା । ଏଥିରେ ଅଧ୍ୟାପକ ଶ୍ରୀକିଶୋର ଚନ୍ଦ୍ର ସାହୁ ଏବଂ ୨ୟ ବାର୍ଷିକ କଳା ଛାତ୍ର ଶ୍ରୀ ସୁଦର୍ଶନ ଦାସ ବଳିଷ୍ଠ ପଦକ୍ଷେପ ନେଇ ଥିବାରୁ ଆମେ ସେମାନଙ୍କୁ ବିଶେଷ କୃତଜ୍ଞତା ଜଣାଉଛୁ । ପରିଷଦର ବିଭିନ୍ନ କାର୍ଯ୍ୟକ୍ରମରେ ଶ୍ରେଣୀ ପ୍ରତିନିଧି ଗଣ, ଓଡ଼ିଆ ବିଭାଗର ଅଧ୍ୟାପକ ବୃନ୍ଦ, ସର୍ବୋପରି ଉପସଭାପତି ଅଧ୍ୟାପକ ବ୍ରହ୍ମାନନ୍ଦ ଦାସଙ୍କ ସ୍ନେହସହାନୁଭୂତି ଆମକୁ ପ୍ରେରିତ କରିଛି । ସେମାନଙ୍କୁ ଅନ୍ତରର ଧନ୍ୟବାଦ ଜଣାଉଛୁ ।

ଶ୍ରୀ ଧନେଶ୍ୱର ସାହୁ
ସଂପାଦକ




# ଦୁଇଟି ଅନୂଦିତ କବିତା

ଅଧ୍ୟାପକ ବ୍ରହ୍ମାନନ୍ଦ ଦାସ

## ନିସର୍ଗ ଚିତ୍ର

ନିକାନୋର ପାରା

ଦେଖ
ଜହ୍ନରୁ ଝୁଲିପଡ଼ିଥିବା ଏଇ ମଣିଷର ଗୋଡଟିକୁ ।
ସିଏ ଏକ ବୃକ୍ଷ ପରି
ବଢ଼ୁଅଛି କ୍ରମଶଃ ନିମ୍ନକୁ,
ସେଇ ଭୟଂକର ଗୋଡ ଘସୁଛି ଶୂନ୍ୟରେ
ହୋଇ କ୍ଷୀଣ ଝଲକିତ
ଜ୍ୟୋତ୍ସ୍ନା ଏବଂ
ଅପରାହ୍ନର ପବନରେ ।

———

# ଜୀବନର ବିଦ୍ୟୁତ

ଓକ୍ଟାଭିଓ ପାଜ୍

ବିଦ୍ୟୁତ୍ ଅବା ମତ୍ସ୍ୟ
ସମୁଦ୍ରର ଗର୍ଭରେ
ପକ୍ଷୀ ଅବା ବିଦ୍ୟୁତ୍
ଅରଣ୍ୟର ଗର୍ଭରେ,
ଅସ୍ଥି ବି ବିଦ୍ୟୁତ
ଶରୀରର ଗର୍ଭରେ ।
ପୃଥିବୀ କେବଳ ରାତ୍ରି
ଏବଂ ଜୀବନହିଁ ବିଦ୍ୟୁତ୍
ସମଗ୍ର ପୃଥିବୀରେ ।

—୦—

ଦ୍ର: ଦ୍ର:—ସର୍ବଶ୍ରୀ ପାବ୍ଲୋ ଓ ପାଜ୍ ଲାଟିନ୍-ଆମେରିକାର ଦୁଇ ପ୍ରତିଭାଶାଳୀ କବି । ପ୍ରସିଦ୍ଧ ଇଂରାଜୀ ପତ୍ରିକା Encounter ର ୧୯୬୫ ସେପ୍ଟେମ୍ବର ସଂଖ୍ୟାରେ ଏହି କବିତା ଦୁଇଟି ପ୍ରକାଶିତ ।

# ତୁମ୍ ପାଇଁ

ଶାନ୍ତିଲତା ପାତ୍ର
ପ୍ରାକ୍-ବିଶ୍ୱବିଦ୍ୟାଳୟ ଛାତ୍ରୀ

ତୁମେ ମୋତେ ଭଲପାଅ ବୋଲି ଏତେ
ସୁନ୍ଦର ଦିଶେ ପ୍ରିୟ
ତୁମର ପ୍ରେମରେ ଆକାଶ ଧରଣୀ
ହସେ ଏତେ ଲୋଭନୀୟ । ୦ ।

ଯେତିକି ଯେତିକି ପାଖକୁ ଆସିଛ
ମୋ ଦୁଇ ଆଖିକୁ ଗଭୀରେ ଚୁମିଛ
ରୂପହୀନା ମୁହିଁ ସେତିକି ହୋଇଛି
ସୃଷ୍ଟିରେ କମନୀୟ । ୧ ।

କଳାକାର ଆଗେ ତୁମ ତୂଳି ଦେଇ
ମୋ ଦେହେ ଯେ ରୂପ ଦେଇଛ ଫୁଟାଇ
ଚମକି ଦୁନିଆ ଖୋଜେ ସେଥିପାଇଁ
ତୁମ ମହା ପରିଚୟ । ୨ ।

—*—

# ପ ଥ ତ ରୁ

ଶ୍ରୀ ଦୀନବନ୍ଧୁ ପ୍ରଧାନ
ଦ୍ୱିତୀୟ ବାର୍ଷିକ କଳା

ନଦୀବଢ଼, ବର୍ଷା, ଅଳସ ମାରୁତରେ ସତ୍ତ୍ୱ
ପଥକଡ଼େ ଉଭା ସେ ଯେ ତଳେ ବସ୍ତ୍ର ନୋହି
କେତେ ନିର୍ଜନ ରଜନୀ ବିସ୍ତାର୍ ତିମିର
ଅସମୀଚ ଖାର୍ଦ ପଥ ଧାରେ ନିର୍ବିକାର
ସୁଖ, ଦୁଃଖ ତଳେ ମନେ ନ ଲାଗଇ ତାର
ନଲୋଡ଼ଇ ସେ ତ କିଛୁ ନାହିଁ ଚିନ୍ତା ଭାର
କିଛି ହିଁ ନାହିଁ ତାହାର ସେ କି ନିଃସ୍ୱତମ
ବିଚଳିତ ନୋହି ଉଭା ତପସ୍ୱୀର ସମ ।
କେତେ କ୍ଲାନ୍ତ ପଥଶ୍ରାନ୍ତ ତାର ପଦତଳେ
କେତେ ଭାଗ୍ୟବାନ ପୁଣି ଧନ ନିଃସ୍ୱ ନରେ
କ୍ଲାନ୍ତ ହରିଲେ ଧୀରେ ଆପଣାର ପଥେ
ଗଲେ, ଆସିବେ ପାଶକୁ ପଥିକ ଯେ କେତେ
ମନରେ ମନାସି କାରେ ହୋଇଚ ସେ ଉଭା
ମଳିନ ମାନ ହୋଇଲା ତା ସବୁଜ ଶୋଭା
ଯଉବନ ଗଲା ତାର ଖାଲି ବ୍ୟର୍ଥତାରେ,
ତଥାପି ସେ ନିତି ଗୁହାଁରି ରହିଅଛି ତାରେ
ଯେତେ ପଥଶ୍ରାନ୍ତ ଏଥି ନତକରି ମଥା
ଯଣ୍ଟେ ତାଳକନ୍ତ ପଦେ ନ କହେ ସେ କଥା
ଆପଣେ ମାଗି ନେଇଛି ବ୍ୟଥା, ନାହିଁ (ତାର) ମାନ
ନିତି ବସି କରୁଅଛି ନୀରବେ ସେ ଧ୍ୟାନ ।

—o—

# ପୃଥିବୀକୁ ପଦେ

କଳ୍ପନା ଚକ୍ରବର୍ତ୍ତୀ
ପ୍ରାକ୍-ବିଶ୍ୱବିଦ୍ୟାଳୟ (କଳା)

ତୁମର ସବୁଜକୋଳରେ ବସି
ଜୀବନପାତ୍ରରୁ ସୁଖର ସୁଗ ନେଇ
ସୃଷ୍ଟିକୁ ଭଲପାଇଲାବେଳେ
ମୋ ସୁଖର ସୁରା ଯଦି ହୁଏ ବିଷରେ ପରିଣତ
ତେବେ ବିଷର ପିୟୂଷ ପିଇ
ହତାଶାର ତମିସ୍ରାରେ ଉବୁଟୁବୁ ହୋଇ
ଶୂନ୍ୟ ସମୁଦ୍ରର ବେଳାଭୂମିରେ ବସି
ଅର୍ଥହୀନ ଜୀବନର ଲହଡ଼ି ଗଣିବାଠାରୁ
ମୃତ୍ୟୁର ଶାନ୍ତିଜଳ ସିଞ୍ଚି ମୋର ଶିରେ
ହେ ପୃଥିବୀ ! ମୋତେ ମୁକ୍ତି ଦିଅ ।



# ଇଜ୍‌ଲାସ୍ ମୋ' ଦୃଷ୍ଟିରେ

**ନରେନ୍ଦ୍ରନାଥ ଭଞ୍ଜ**
ଦ୍ୱିତୀୟ ବାର୍ଷିକ କଳା (ଉଚ୍ଚମାନ)

ଜୀବନର ରଣକ୍ଷେତ୍ରେ ଯୁଝି ଯୁଝି
ସାଜିଛି ସେ ପରାସ୍ତ ସୈନିକ
ହରାଇଛି ନିଜ ତୂଣୀ
ସାଜିଛି ସେ ମୂର୍ଖ କାପାଳିକ
ଏବଂ ହତ୍ୟା କରିଛି ସେ ନିଜର ଅନ୍ତ ଆପଣାକୁ ।
କଂପା ହସ୍ତ, ହେ ଭୀରୁ ଜନତା
ଉଠାଅ ପଲକ ତବ ରଙ୍ଗା ନୟନର ?
ଆଜି ଗଲେ କାଲିପରା
ଛେଳିକୁ କୁକୁର—
ଶିନିବୁଣ୍ଡେ କରିବାଠା
କରିବାଠା ଅଭ୍ୟାସ ତୁମର,
ଏବଂ ଭୀରୁ ସାଜି ଚିରଦିନ ଖାଲି କହୁଥିବ
"କାହିଁ ସୁବର୍ଣ୍ଣର ?"



# ଚମ୍ପୂଟିଏ

ଶ୍ରୀ ବସନ୍ତକୁମାର ମହାପାତ୍ର
ପ୍ରଥମ ବାର୍ଷିକ କଳା

ତୃତୀୟା ଜହ୍ନର ବଙ୍କିମ ହସ
କୃଷ୍ଣଚୂଡ଼ାର ରକ୍ତିମ ଚପଳତା
ଗଙ୍ଗଶିଉଳୀ ଫୁଲର ମହକ,
ଏମାନେ ମୋର ବିଗତ ଚଞ୍ଚଳ ଜୀବନର ସ୍ମାରକୀ ।
ଆଜ ଆମେ ଦୁହେଁ
ମୋ ଆଖିରେ ଲୁହର ସମୁଦ୍ର
ତା ଆଖିରେ ଉଷ୍ଣ ପ୍ରସ୍ରବଣ ।
ହେ ଈଶ୍ୱର-ଏ ତମର ସଂସାର
ଏତିକ-ତିକ୍ତ ଏତିକ ମଧୁର,
ଏତିକ ମଧୁସିକ୍ତ ପୁଣି ଏତିକ ବେଦନାକ୍ତ !



# ଜୀ ବ ନ
# ବ ର ଷା
# ଋ ତୁ


ଶ୍ରୀଚରଣ ମହାନ୍ତି
ପ୍ରାକ୍-ବିଶ୍ୱବିଦ୍ୟାଳୟ (କଳା) 'କ'


ବରଷା ଅସରାପରେ, ସବୁଜ ପ୍ରାନ୍ତରପରେ
ଶିଶୁ ଘାସ ମୁଣ୍ଡଟେକ ଉଠଇ
ଛୋଟ ଛୋଟ ପାଦଚାଲ, ପିନ୍ଧି ମଖମଲ ଶାଢ଼ି
ସାଧବ ବୋହୂଟି ବେଗେ ଚଳଇ ।
ଧଳା କଳା ବାଦଲର ଲୁଚକାଳି ଖେଳଘର
ଫାଙ୍କା ଆକାଶଟା ଏବେ ହୋଇଛି,
ମଣିଷ ଜୀବନ ଘରେ, ଦୁଃଖ ଆଉ ସୁଖଙ୍କର
ଲୁଚକାଳି ଖେଳ ସତେ ଚାଲିଛି ।

ଏ ବିଶ୍ୱ ବାଦଲ ଆସେ, କାଳିମା ଆକାଶେ ଗ୍ରାସେ
କାଳିମାର ଘୁଇ ନଭେ ଘୋଟଇ
ଏ ମଣିଷ ଜୀବନରେ ଦୁଃଖ ଅନ୍ଧକାର ଘେରେ
ସୁଖର ରବିଙ୍କୁ ବିଏ ଘୋଡାଇ ।
ନିଶାରେ ନିଦ୍ରିତ କାଳେ, ମଣିଷ ସ୍ୱପନ ଖେଳେ
ସ୍ୱପନର ଜାଲ କେତେ ବୁଣଇ
ଆଶାର ସିଡ଼ିରେ ଚଢ଼ି, ଆଶାର ଡାଳରେ ମାଡ଼ି
ଆକାଶ କୁସୁମ କେତେ ତୋଳଇ ।
ନଭାବେ ସେ କେବେହେଲେ ଏ ମଣିଷ ଜୀବନରେ
ଦୁଃଖ ରାହୁ ମୁଖ ମେଲି ଆସିବ,
ଏ ମଣିଷ ଜୀବନର ସୁଖର ଚନ୍ଦ୍ରମାକୁ ସେ
ତା'ର କାଳମୁଖ ମଧ୍ୟେ ଗ୍ରାସିବ ।
ସାଧବ ବୋହୂର ରଙ୍ଗ ପରି ତାର ମନ ରଙ୍ଗ
ରଙ୍ଗିନ ନିଶାରେ ମନ ଉଡ଼ାଏ
ଏ ଭଙ୍ଗୁର ଜୀବନରେ, ଦୁଃଖ କି ଆସିବ ଥରେ,
ମାନବର ମନେ ଚିନ୍ତା ନ ଥାଏ ।
ସୁଖରେ ନୋହି ଚଞ୍ଚଳ, ଦୁଃଖରେ ନୋହି କାତର
ଜୀବନର କର୍ମ କ୍ଷେତ୍ରେ ଚଳିବ
ଜୀବନ ବରଷା ଋତେ
ତେବେ ମୋ ଜୀବନ ପଥେ
ସୁଖ ଦୁଃଖ ସମକରି ମଣିବ ।

ଶ୍ରାବଣୀ ସାହିତ୍ୟ ସଂସଦ ଆନୁକୁଲ୍ୟରେ ହୋଇଥିବା କବିତା ପ୍ରତିଯୋଗିତା ୧୯୭୦ରେ ପ୍ରଥମ ପୁରସ୍କାର ପ୍ରାପ୍ତ ।

—*—



# ଓଡ଼ିଆ ସାଂପ୍ରତିକ ଉପନ୍ୟାସ

ଅଧ୍ୟାପକ ଶ୍ରୀକିଶୋରଚନ୍ଦ୍ର ସାହୁ

ସୁଖ୍ୟାତ ହିନ୍ଦି ଔପନ୍ୟାସିକ ସ୍ୱର୍ଗୀୟ ପ୍ରେମଚାନ୍ଦଙ୍କ ମତରେ "ମୈଁ ଉପନ୍ୟାସକୋ ମାନବ ଚରିତ୍ର କା ଚିତ୍ର ମାତ୍ର ସମଝତା ହୁଁ । ମାନବ ଚରିତ୍ର ପର ପ୍ରକାଶ ଡାଲନା ଔର ଉସକେ ରହସ୍ୟୋଁ କା ଖୋଲନା ହି ଉପନ୍ୟାସ କା ମୂଲତତ୍ତ୍ୱ ହୈ" । ଏହି କାରଣରୁ ଜାପାନର ଔପନ୍ୟାସିକ ୟୁସୁନାରି କାୱାବାତା ଓ ୟୁଗୋସ୍ଲାଭିଆର ଆଇଭୋ ଆଣ୍ଡ୍ରିକ ନୋବେଲ ପୁରସ୍କାର ଲାଭ କରିଥିଲେ । ଉପନ୍ୟାସରେ ସମାଜ ଜୀବନର ଚିତ୍ର ନିଶ୍ଚିତ ରହିବ ।

ଲେଖକ ମଣିଷର ବାସ୍ତବରୂପ ଭୁଲିଗଲେ ଚଳିବ ନାହିଁ । କିନ୍ତୁ ପୂର୍ଣ୍ଣ ବାସ୍ତବତା ବର୍ଣ୍ଣନା ମଧ୍ୟ ଅନେକ କ୍ଷେତ୍ରରେ ସମ୍ଭବପର ନୁହେଁ । ଉଦାହରଣ ସ୍ୱରୂପ ସ୍ତ୍ରୀ ପୁରୁଷର ଯୌନ ସମ୍ପର୍କ ଯାହାକି ନିଭୃତ କୋଠରୀର ନିଭୃତ କୋଣରେ ସମ୍ଭବ ତା ପ୍ରଖର ଦିବାଲୋକରେ ସମାଜ ସମ୍ମତ ନୁହେଁ । ହୁଏତ କେହି କେହି ଆଦର୍ଶବାଦକୁ ନେଇ ରଚନାର ପକ୍ଷପାତି । କିନ୍ତୁ ସମ୍ପୂର୍ଣ୍ଣ ଆଦର୍ଶବାଦ ମଧ୍ୟ ଉପନ୍ୟାସକୁ ସୁଖପାଠ୍ୟ କରେନା—ପାପୀ, ଅତ୍ୟାଚାରୀ, ଲମ୍ପଟ ଦୁର୍ଯ୍ୟୋଧନ କି ରାବଣ ପରି ପୁରୁଷର ଚିତ୍ର ଆଦର୍ଶର ପ୍ରଚାର କରେ ସିନା, କିନ୍ତୁ ଯେଉଁ ସମାଜରେ ଧନୀ ଦରିଦ୍ର ମଧ୍ୟରେ ବିରାଟ ପାଚେରୀ ସେଠାରେ ଆଦର୍ଶବାଦୀ ପୁରାଣ ଚରିତ୍ରର ମାନେ କିଛି ନାହିଁ । ଏହି ଦୃଷ୍ଟି କୋଣରୁ ମନେ ହୁଏ ଲେଖକ ଯେଉଁ ଉପନ୍ୟାସରେ ଆଦର୍ଶ ଓ ବାସ୍ତବର ମିଳନ ଘଟାଇ ଥାଆନ୍ତି ସେ ଉପନ୍ୟାସ ସୁଖ ପାଠ୍ୟ । ସାମ୍ପ୍ରତିକ ଔପନ୍ୟାସିକମାନଙ୍କ ମଧ୍ୟରେ କାହ୍ନୁଚରଣ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ଶାନ୍ତନୁ ଆଚାର୍ଯ୍ୟ, ବିଭୂତି ପଟ୍ଟନାୟକ ପ୍ରଭୃତିଙ୍କ ଉପନ୍ୟାସଗୁଡ଼ିକ ଏହି ଆଦର୍ଶ ଓ ବାସ୍ତବର ମିଶ୍ରିତ ରୂପ ନେଇ ଗଢ଼ି ଉଠିଛି । ଏବେ ଉପନ୍ୟାସ ସଂଖ୍ୟା ଦୃଷ୍ଟିରୁ ଅଭିବୃଦ୍ଧି ଲାଭ କରିଥିଲେ ମଧ୍ୟ ଗୁଣ ଦୃଷ୍ଟିରୁ ଏହାର ବିକାଶ ନ ହେଲା ପରି ମନେ ହୁଏ । ଗୁଣ କହିଲେ ନୂତନ କଥା ବସ୍ତୁ, ଔପନାସିକର ନୂତନ ମର୍ମବାଣୀ, ନୂତନ ଶୈଳୀ ବା ପ୍ରକାଶଭଙ୍ଗୀ । କିନ୍ତୁ ସ୍ୱାଧୀନତା ପରବର୍ତ୍ତୀ ଉପନ୍ୟାସମାନଙ୍କରେ ଯେ ଆଦୌ ଗୁଣାତ୍ମକ ଅଭିବୃଦ୍ଧି ହୋଇନି ତା କୁହାଯାଇ ନ ପାରେ । 'ପୃଥିବୀ ବାହାରେ ମଣିଷ', 'ଦାନାପାଣି,' 'ତମସାତୀରେ,' 'ସୀମାନ୍ତ ଆହ୍ୱାନ' ଅମାବାସ୍ୟାର ଚନ୍ଦ୍ର', 'ନରକିନ୍ନର', 'ନୀଳଶୈଳ' 'ଶତାବ୍ଦୀର ସୂର୍ଯ୍ୟ', ନେପଥ୍ୟ' ପ୍ରଭୃତି ଉପନ୍ୟାସ ନୂତନ କଥା, ନୂତନ ଶୈଳୀ ଓ ପ୍ରକାଶଭଙ୍ଗୀ

ନେଇ ଯେ ଜନ୍ମ ନେଇଛି ଏବଂ ସମସ୍ତ ପାଠକମାନଙ୍କୁ ସେ ମୁଗ୍ଧ କରିଛି ଏହା ନିଃସନ୍ଦେହରେ ପ୍ରକାଶ କରାଯାଇ ପାରେ । ସ୍ୱାଧୀନତା ପରେ ଯେଉଁ ଉଲ୍ଲେଖଯୋଗ୍ୟ ପରିବର୍ତ୍ତନ ଦେଖାଦେଲା ତା ହେଲା ମୁଖ୍ୟତଃ ଗଣତନ୍ତ୍ର ମାଡରର ପ୍ରଣୟନ ଦ୍ୱାରା । କିନ୍ତୁ ଏହାର ସୁଫଳ ଯେତେ ଫଳିଲା କୁଫଳ ମଧ୍ୟ ଯୁବସମାଜକୁ ଦିଗ୍‌ଭ୍ରାନ୍ତ କରାଇଲା । ଯାହାର ପ୍ରକୃତ ଚିତ୍ର ଦେଇଛି ଶ୍ରୀବାସୁଦେବ ବେହେରାଙ୍କ 'ବିଜୟିନୀ' । ପୁଣି କେତେକ ନ୍ୟସ୍ତ ସ୍ୱାର୍ଥାନ୍ୱେଷୀ ଲୋକଙ୍କର ଆଡମ୍ବର ଫଳରେ ତ୍ୟାଗୀ, ସମାଜସେବୀ ଲୋକମାନଙ୍କର ଦୁରବସ୍ଥାର ଚିତ୍ର ବହନ କରିଛି 'ଅନ୍ଧଦିଗନ୍ତ' । ସମାଜବାଦ, କୃଷି ପ୍ରତି ଆକର୍ଷଣ, ଏବଂ ଦେଶ ପାଇଁ ଜବାନ ପଣିଆକୁ ନେଇ ସୃଷ୍ଟି ହେଲା 'ଛାମସୀରାଧା' । ପ୍ରକୃତରେ କହିବାକୁ ଗଲେ ଲଫ୍ଟ ବିଲଫ୍ଟ, ଛାମସୀ ରାଧା, ଅମାବାସ୍ୟାର ଚନ୍ଦ୍ର, ସ୍ଥିର ଚଉଙ୍ଗ, ଅନ୍ଧଦିଗନ୍ତ ପ୍ରଭୃତି ଉପନ୍ୟାସ ସମୂହରେ ବାସ୍ତବତାର ଧ୍ୱନି ଶୁଣିବାକୁ ମିଳେ । ମହାତ୍ମାଙ୍କ ନୀତି ନିୟମ ପାଳନ, ନୂତନ ସମାଜ ପ୍ରତିଷ୍ଠା ପାଇଁ ପଥ ପ୍ରଦର୍ଶନ କରାଯାଇଛି ଏହି ଉପନ୍ୟାସ ଗୁଡ଼ିକରେ । ଅହିଂସା ଦ୍ୱାରା ହିଂସାର ସମାଧାନ, ତ୍ୟାଗୀ ଓ ସମାଜ ସେବୀମାନଙ୍କୁ ସମ୍ମାନ, ସମାଜର ନବୀକରଣ, ଚେତନା ପ୍ରବାହ ଆଦିର ସମନ୍ୱୟ ସଂଗଠିତ ମଧ୍ୟ ଏ ଉପନ୍ୟାସ ସମୂହରେ ହୋଇ ପାରିଛି । ପୁଣି ସାମାଜିକ ଜୀବନର ଅର୍ଥନୈତିକ ବୈଷମ୍ୟ 'ଲଫ୍ଟ ବିଲଫ୍ଟ'କୁ ଯେ ବଳିଷ୍ଠ କରିଛି କହିଲେ ଭୁଲ ହେବନି । ସାମାଜିକ ଜୀବନରେ ବର୍ଜିତ, ଘୃଣିତ, ପରିତ୍ୟକ୍ତ ଅଂଶର ଯାଥାର୍ଥ୍ୟ ପ୍ରତିପାଦନ କରିଛି 'ନର କିନ୍ନର' । ଏହାଛଡ଼ା ପ୍ରେମ ମଣିଷ ଜୀବନର ଏକ ଅବିଚ୍ଛେଦ୍ୟ ଅଂଶ ରୂପେ ଆଦିମ କାଳରୁ ରହି ଆସିଛି । ସାମ୍ପ୍ରତିକ ଔପନାସିକ-ମାନଙ୍କ ମଧ୍ୟରୁ ଚନ୍ଦ୍ରମଣି ଦାସ ଓ ଲକ୍ଷ୍ମୀଧର ଦାସଙ୍କର ସମସ୍ତ ଉପନ୍ୟାସ ପ୍ରେମ ଏବଂ କୌତୁହଳପୂର୍ଣ୍ଣ । କିନ୍ତୁ 'ସବୁହରା' ଏବଂ

'ହାସ୍ୟରେ ଦୁର୍ଦ୍ଧଗାଦେଶ' ଉପନ୍ୟାସରେ ପ୍ରେମର ରୋମାଞ୍ଚକାରୀ ଶସ୍ତା ବର୍ଣ୍ଣନା ନାହିଁ । ସଚ୍ଚିଦାନନ୍ଦ ରାଉତରାୟଙ୍କର 'ଚନ୍ଦ୍ରଗ୍ରୀବ' ପ୍ରେମ ବ୍ୟାପାରକୁ ନେଇ ସୃଷ୍ଟି ହୋଇଥିଲେ ମଧ୍ୟ ଶସ୍ତା ପ୍ରେମର ବର୍ଣ୍ଣନା ପରିବର୍ତ୍ତେ ପ୍ରେମର ଏକ ନୂତନ ମାର୍ଗ ସେଥିରେ ପ୍ରଦର୍ଶିତ ହୋଇଛି ।

'ଚଲାବାଟ' ଏବଂ 'ନାୟିକାର ନାମ ଶ୍ରାବଣୀ'ରେ ପ୍ରେମ ମଧ୍ୟରେ ଆଦର୍ଶବାଦର ପ୍ରଚାର କରାଯାଇଛି । ଏକ ନୂତନ ଶୈଳୀର ଅନ୍ୱେଷଣ କରିଛନ୍ତି ଶ୍ରୀ ରାଜକିଶୋର ପଟ୍ଟନାୟକ ଏବଂ ବିଭୂତି ପଟ୍ଟନାୟକ । ପୁଣି ଶିକ୍ଷିତା ଯୁବତୀ ମାନଙ୍କର ବଧୂ ଜୀବନର ପୂର୍ଣ୍ଣ କର୍ତ୍ତବ୍ୟ ପରାୟଣତାର ଆଦର୍ଶ ଦେଖାଇଛନ୍ତି ବସନ୍ତକୁମାରୀ ପଟ୍ଟନାୟକ ଅମଡ଼ାବାଟ ଉପନ୍ୟାସରେ । ନିତ୍ୟାନନ୍ଦ ମହାପାତ୍ରଙ୍କର 'ଜୀଅନ୍ତା ମଣିଷ' ଓ 'ହିଡ଼ମାଟି'ରେ ଆଦର୍ଶ ନାରୀ ଚରିତ୍ର ଗୁଡ଼ିକ ସ୍ମରଣୀୟ । ସମାଜ ସଂଗଠନ କ୍ଷେତ୍ରରେ ଏକତା ସର୍ବାଦୌ ଆବଶ୍ୟକ । ଏକତା ନ ରହିଲେ ସମାଜ ମେରୁଦଣ୍ଡ ଦୋହଲିଯାଏ । ଐକ୍ୟ ପ୍ରତିଷ୍ଠା ଦିଗରେ ଜ୍ଞାନୀନ୍ଦ୍ରବର୍ମାଙ୍କ ଭୂମିକା ଏକ ନୂତନ ପଦକ୍ଷେପ । ବିଜ୍ଞାନ ସମ୍ବନ୍ଧୀୟ କାହାଣୀକୁ ନେଇ ଉପନ୍ୟାସ ରଚନା ଓଡ଼ିଆ ସାହିତ୍ୟରେ ବିଶେଷ ହୋଇ ପାରିନ । ବିଦେଶୀ ଉପନ୍ୟାସ ତୁଳନାରେ ଏହାର ଅଭିବୃଦ୍ଧି ଆଦୌ ହୋଇନ କହିଲେ ସତ୍ୟର ଅପଳାପ ହେବନ । ଏ କ୍ଷେତ୍ରରେ ଗୋକୁଳାନନ୍ଦ ମହାପାତ୍ରଙ୍କର 'ପୃଥିବୀ ବାହାରେ ମଣିଷ' ଏବଂ 'ସୁନାର ଓଡ଼ିଶା' କଥିତ ଦାନ ।

ସ୍ୱାଧୀନତାପରେ ଦଳିତ ନିଷ୍ପେସିତ ହରିଜନ ଏବଂ ଅରଣ୍ୟରେ ବାସ କରୁଥିବା ଲୋକମାନଙ୍କର ଉନ୍ନତି ହୋଇଛି । ଆଜିପର୍ଯ୍ୟନ୍ତ ନିମ୍ନ ସ୍ତରରେ ରହୁଥିବା ଏହି ଲୋକମାନଙ୍କର ଉପରକୁ ଉଠିବା ପାଇଁ ସୁଯୋଗ ନଥିଲା । ମହାତ୍ମାଗାନ୍ଧୀଙ୍କର ଅସ୍ପୃଶ୍ୟତା

ନିବାରଣ ଆହ୍ୱାନରେ ଏମାନେ ସମାଜରେ ସ୍ଥାନ ପାଇଲେ । ମଣିଷ ଜାତି ଏକ ବୋଲି ଘୋଷିତ ହେଲା । ସମାଜ ଜୀବନରେ ଯେମିତି ଏମାନେ ଅବହେଳିତ ସାହିତ୍ୟରେ ମଧ୍ୟ ଏମାନେ ଥିଲେ ସେମିତି ଅନାଦୃତ ଘାସ । କେହି ଏମାନଙ୍କୁ ସାଇତି ରଖିବାର ପ୍ରୟାସ କରି ନ ଥିଲେ । କିନ୍ତୁ ପରେ ସେହି ସମାଜର ତଳକୁ ନେଇ ଉପନ୍ୟାସ ରଚନାରେ ବ୍ରତୀ ହେଲେ ଗୋପୀନାଥ ମହାନ୍ତି । 'ଦାଦିବୁଢା' 'ପରଜା' 'ଅମୃତର ସନ୍ତାନ'ର କଥାବସ୍ତୁ ନିମ୍ନ ଶ୍ରେଣୀର ଲୋକ ମାନଙ୍କର, ଯେଉଁମାନଙ୍କୁ ସମାଜ ଆଗେ ଘୃଣା କରୁଥିଲା ଏବଂ ପାଖରେ ବସାଇ ଦେଉ ନ ଥିଲା, ଗୋପୀବାବୁ ସେମାନଙ୍କୁ ସମସ୍ତଙ୍କ ପାଖକୁ ଆଣିଛନ୍ତି ଏବଂ ସେମାନଙ୍କ ଜୀବନ କାହାଣୀ ଶୁଣେଇଛନ୍ତି ସମସ୍ତଙ୍କୁ । ସେମାନଙ୍କ ଅଶ୍ରୁଳ ଜୀବନ ଚରିତ ସମସ୍ତଙ୍କୁ ଯେ ଚଞ୍ଚଳ କରିଛି ଏହା ପାଠକେ ନିଶ୍ଚୟ ସ୍ୱୀକାର କରିବେ । ଚରିତ୍ର ଗୁଡ଼ିକର ବିଶ୍ଳେଷଣ, ବର୍ଣ୍ଣନାର ପ୍ରାଚୁର୍ଯ୍ୟ ଉପନ୍ୟାସରେ ଯଥେଷ୍ଟ । ଅନ୍ତଶ୍ଚରିତ୍ର ଅପେକ୍ଷା ବାହ୍ୟ ଚରିତ୍ର ଚିତ୍ରଣ ଅପେକ୍ଷାକୃତ ବେଶୀ । 'ହରିଜନ' 'ତଳେ ମାଟି ଉପରେ ଆକାଶ', 'ମୁଁ ଲାଆପିଲା', ଇତ୍ୟାଦି ଉପନ୍ୟାସ ଗୁଡ଼ିକ ଏହି ସ୍ତରର ଉପନ୍ୟାସ ଭାବରେ ନିଆଯାଇ ପାରେ । ଗୋପୀବାବୁଙ୍କ 'ଦାନାପାଣି' ସରକାରୀ ଦୋଷ ଦୁର୍ବଳତାକୁ ଏକ କଟାକ୍ଷପାତ । ନ'ଅଙ୍କ ଦୁର୍ଭିକ୍ଷ ଆଜି ବି ବୟସ୍କ ଲୋକେ ସ୍ମରଣ କରି ଥାନ୍ତି । କେହି କେହି ଏହାକୁ ଅଂଶତଃ ଲେଖିଛନ୍ତି ;କେହି କେହି ବାପ, ଅଜାଙ୍କ ଠାରୁ ଏହାର ପ୍ରଭାବ ଶୁଣିଥାନ୍ତି । କିନ୍ତୁ ତାର ଏକ ବାସ୍ତବ ରୂପ ଓଡ଼ିଆ ଉପନ୍ୟାସରେ ଦେଇଛନ୍ତି କାହ୍ନୁବାବୁ । ହା ଅନ୍ନ ଓ ଶାସ୍ତି ଏହିପରି ଉପନ୍ୟାସ ଦୁର୍ଭିକ୍ଷର ନିଖୁଣ ଚିତ୍ର ଉପନ୍ୟାସ ଦୁଇଟି ବହନ କରିବା ସଙ୍ଗେ ସଙ୍ଗେ ସମାଜର ପ୍ରତିକ୍ରିୟା ସ୍ପଷ୍ଟ ଫୁଟେଇ ଦେଇଥାଏ । ପାରୋଶତ ଭାଷାବିତ୍ ଉପନ୍ୟାସ ଦୁଇଟିକୁ ଆଦୃତ

ଜନପ୍ରିୟ କରେଇଥାଏ । ଓଡ଼ିଆ ଉପନ୍ୟାସ ଜଗତରେ କାହ୍ନୁ ଚରଣଙ୍କ ଦାନ ଯଥେଷ୍ଟ । କିନ୍ତୁ କାହ୍ନୁଚରଣଙ୍କର ପ୍ରାୟ ଅଧିକାଂଶ ଉପନ୍ୟାସ ବିଦେଶୀ ଉପନ୍ୟାସ ଅନୁକରଣରେ ଲିଖିତ । ଚରିତ୍ର ଚିତ୍ରଣରେ ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏନା । ଭଞ୍ଜନାୟିକା ପରି ଚରିତ୍ର ଗୁଡ଼ିକ ଖାଲି ବିଭିନ୍ନ ଉପନ୍ୟାସରେ ନାମ ପରିବର୍ତ୍ତନ କରି ଆସିଥାନ୍ତି । କିନ୍ତୁ ଏ କଥା ନିଶ୍ଚୟ ସ୍ୱୀକାର୍ଯ୍ୟ ଯେ ଓଡ଼ିଆ ଉପନ୍ୟାସ ଜଗତରେ ସେ ଏକ ଶ୍ରେଷ୍ଠ କଳାକାର । 'କା' ଓ 'ସା'ର ମାନସିକ ଦ୍ୱନ୍ଦ ନେଇ ରଚିତ 'କା' ଓଡ଼ିଆ ଉପନ୍ୟାସ କ୍ଷେତ୍ରରେ ନୂତନ ସୃଷ୍ଟି । ପୁଣି ସ୍ୱାଧୀନତା ପରେ ଏ ଦେଶରେ ପଞ୍ଚବାର୍ଷିକ ଯୋଜନା ପ୍ରବର୍ତ୍ତନ ହେଲା । ପଞ୍ଚବାର୍ଷିକ ଯୋଜନାର ଫଳପ୍ରଦତାର ପରୀକ୍ଷା କରାଯାଇଛି ବଜ୍ରବାହୁ ଉପନ୍ୟାସରେ, କିନ୍ତୁ ଲେଖକ କେବଳ ସଫଳତାର କାରଣ ଗୁଡ଼ିକ ନିର୍ଦ୍ଦେଶ କରିଛନ୍ତି ସିନା ବିଫଳତାର କାରଣ ବିଷୟରେ ସଂପୂର୍ଣ୍ଣ ନୀରବ । ଦୋଷ ଓ ଗୁଣର ସମ୍ମିଶ୍ରଣରେ ଉପନ୍ୟାସଟି ଗଢ଼ି ଉଠିଥିଲେ ଅଧିକ ସୁନ୍ଦର ହୋଇ ପାରିଥାନ୍ତା । କିନ୍ତୁ ଜମିଦାରୀ ଉଚ୍ଛେଦ ଓ ସାମନ୍ତବାଦୀ ଶ୍ରେଣୀର ମନୋଗତିର ବର୍ଣ୍ଣନା 'ବଜ୍ରବାହୁ'କୁ ମନୋଜ୍ଞ କରିଛି । ମଧ୍ୟବିତ୍ତ ସମାଜର ସଂଘର୍ଷ 'ଭୁବନେଶ୍ୱର' ( ସତ୍ୟାନନ୍ଦ ବେହୁରା ) ପରି ବିଭିନ୍ନ ଉପନ୍ୟାସରେ ରୂପାୟିତ । 'ଏଇ ଗାଁ ଏଇ ମାଟି' ଉପନ୍ୟାସରେ ଗ୍ରାମ୍ୟ ସମାଜର ଚିତ୍ର ଦିଆଯାଇଛି ।

ସ୍ୱାଧୀନତା ପରେ ନାରୀ ଜାଗରଣ ଏକ ଉଲ୍ଲେଖଯୋଗ୍ୟ, ଘଟଣା, 'ଅମଡ଼ାବାଟ' ଓ 'ପ୍ରତିଦ୍ୱନ୍ଦ୍ୱୀ' ଉପନ୍ୟାସରେ ଏହାର ଜ୍ୱଳନ୍ତ ଛବି ରହିଛି । ଏ ସମୟରେ ଶିଳ୍ପର ଉନ୍ନତି ହୋଇଛି । କଳ କାରଖାନାର ଚିମିଣି ଧୂଆଁ ଭିତରେ ଏ ଦେଶର ଶ୍ରମିକ ନିର୍ଧୂମ ଖଟିଛି ସହରୀ ସଭ୍ୟତା ପ୍ରତି ଆକୃଷ୍ଟ ହୋଇ । ଏ ଧରଣର

କଥାବସ୍ତୁ ନେଇ ରଚିତ ହୋଇଛି । 'ମାଟିମଟାଳ', 'ରାଉଳ କେଲାର ଗତ' ପ୍ରଭୃତି ଉପନ୍ୟାସ, ଦେଶରେ ଶିଳ୍ପର ପ୍ରସାର ଉପନ୍ୟାସ ରଚନାକୁ ଯଥେଷ୍ଟ ଉପାଦାନ ଯୋଗାଇଛି । ସମସ୍ତ ଥିଲା ଯେତେବେଳେ ଲେଖକ ଚରିତ୍ର ଆଣୁଥିଲା ଆଭିଜାତ୍ୟ ଶ୍ରେଣୀରୁ । ସାଧାରଣ ଚରିତ୍ର ଯେମିତି ସାହିତ୍ୟ ଦରବାରରେ ଆସନ ପାଇବାର ଯୋଗ୍ୟ ନୁହେଁ ଏହା ସେ ଭାବୁଥିଲା । କିନ୍ତୁ ସେ ଭାବନା କ୍ରମଶଃ ଦୂରେଇଗଲା । ଚରିତ୍ର ଆହରଣ କରିବା ପାଇଁ ସମାଜରେ କୌଣସି ବାଛ ବିଚାର ରହିଲା ନାହିଁ । ସେ ଆଭିଜାତ୍ୟ, ଗୋଷ୍ଠୀରୁ ଆସୁ ବା ମଧ୍ୟବିତ୍ତ ପରିବାରରୁ ଆସୁ, ବା ହରିଜନ ସମ୍ପ୍ରଦାୟରୁ ଆସୁ, ବା ମୂଲିଆ ଶ୍ରେଣୀରୁ ଆସୁ ବା ଶ୍ରମିକ ଗୋଷ୍ଠୀରୁ ଆସୁ, କିଛି ଯାଏ ଆସେ ନାହିଁ । ଲେଖକ ଯେଉଁଠୁ ନିଜ କଳ୍ପିତ ଘଟଣାର ଆଭାସ ପାଏ ସେହି ଚରିତ୍ରକୁ ଉପନ୍ୟାସରେ ଶ୍ରେଷ୍ଠ ସ୍ଥାନ ଦେଇଥାଏ । ତା'ର ତୂଳିରେ ସେହି ଅପାଂକ୍ତେୟ ହିଁ ଅଲୌକିକ ସୌନ୍ଦର୍ଯ୍ୟ ଧାରଣ କରେ ।

ସ୍ୱାଧୀନତା ପରେ ରାଜନୈତିକ ବିପ୍ଳବ ମଧ୍ୟ ଉପନ୍ୟାସର କଥାବସ୍ତୁ ହୋଇଛି । ଇଂରେଜ ଶାସନ ଓ ସଭ୍ୟତା ବିରୁଦ୍ଧରେ ଏ ଜାତିର ମିଳିତ ପ୍ରତିକ୍ରିୟା ଏ ଦେଶର ଉପନ୍ୟାସକୁ ଖୋରାକ ଯୋଗାଇଛି । ଏ ଧରଣର ଉପନ୍ୟାସ ମଧ୍ୟରେ ଶତାବ୍ଦୀର ସୂର୍ଯ୍ୟ,' 'ପ୍ରତିଭା' ପ୍ରଭୃତି ଉପନ୍ୟାସକୁ ନିଆଯାଇପାରେ । ଔପନ୍ୟାସିକଙ୍କର ରସାଳ ଅନୁଭୂତି 'ଶତାବ୍ଦୀର ସୂର୍ଯ୍ୟ'କୁ ଜନପ୍ରିୟ କରିଛି । ଉକ୍ତର ମହତାବଙ୍କର 'ପ୍ରତିଭା' ଅବ୍ୟାପାର, 'ଟାଉଟର' ଉପନ୍ୟାସରେ ରହିଛି ଅସହଯୋଗ ଆନ୍ଦୋଳନର ତୀବ୍ର ପ୍ରତିକ୍ରିୟା ଏବଂ ରାଜନୈତିକ ଘନଘଟାର କାହାଣୀ । ପୁଣି ରାଜନୈତିକ ନେତା-ମାନଙ୍କର ଚରିତ୍ର ଚିତ୍ରଣ କରାଯାଇଛି 'ଅନ୍ଧଦିଗନ୍ତ' ଉପନ୍ୟାସରେ ।

ଓଡ଼ିଆ ଉପନ୍ୟାସ ଜଗତରେ ମନୋରଞ୍ଜନ ଉପନ୍ୟାସର ଅଭାବ ପରିଲକ୍ଷିତ ହେଲେ ହେଁ କା', ଚଲବାଟ', 'ଅମଡ଼ାବାଟ' ପ୍ରଭୃତି ଉପନ୍ୟାସ ସେ ଅଭାବ ପୂରଣ ପାଇଁ ସାମାନ୍ୟତମ ପ୍ରଚେଷ୍ଟା ।

ଏହାଛଡ଼ା ଇତିହାସ ମଧ୍ୟ ଉପନ୍ୟାସ ସହ ଅନେକାଂଶରେ ଜଡ଼ିତ । ଇତିହାସର କୌଣସି ଏକ କଥାବସ୍ତୁ ନେଇ କଳ୍ପନାର ତୂଳିରେ ତାକୁ ରଙ୍ଗେଇ ଔପନ୍ୟାସିକ ଉପନ୍ୟାସ ସୃଷ୍ଟି କରିଥାଏ । ସାହିତ୍ୟ ଇତିହାସ ନୁହେଁ । ତେଣୁ ଏ କ୍ଷେତ୍ରରେ ଔପନ୍ୟାସିକଙ୍କୁ ଅତ୍ୟଧିକ ସତର୍କତା ଅବଲମ୍ବନ କରିବାକୁ ହୋଇଥାଏ । କେବଳ ସିଧାସଳଖ ଇତିହାସର କଥା, ଇତିହାସର ଚରିତ୍ର ନେଇ ପ୍ରକାଶ ପାଇଲେ ତା ଉପନ୍ୟାସ ହୁଏନା । ହୁଏତ ତା ଇତିହାସର ସଂକ୍ଷିପ୍ତ ସାର ସଂରକ୍ଷଣ ହୋଇପାରେ । ଇତିହାସର କାହାଣୀ, ଅବଲମ୍ବନରେ ରଚିତ ଉପନ୍ୟାସରେ ଲେଖକର କଳ୍ପନା ମୁଖ୍ୟ । କାହ୍ନୁ ଚରଣଙ୍କର 'ସ୍ୱପ୍ନ ନା ସତ୍ୟ', 'ବାଲିରାଜାକୁ' ଐତିହାସିକ ଉପନ୍ୟାସ ଭାବରେ ସ୍ୱୀକାର କରାଯାଇପାରେ । ଗୋଦାବରୀଶଙ୍କର 'ରାଜଦ୍ରୋହୀ' ମଧ୍ୟ ଏହି ସ୍ତରର ଉପନ୍ୟାସ । ଆଜି ପର୍ଯ୍ୟନ୍ତ ଓଡ଼ିଆରେ ଲିଖିତ ଐତିହାସିକ ଉପନ୍ୟାସମାନଙ୍କ ମଧ୍ୟରେ ଭାଷା, ଭାବ, ରସ ଦୃଷ୍ଟିରୁ ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ' ଯେ ସର୍ବୋତ୍କୃଷ୍ଟ ଏହା ନିଃସନ୍ଦେହ । ଘଟଣାବଳୀର ସୁସଜ୍ଜିତ ସଂସ୍ଥାପନହିଁ ଉପନ୍ୟାସଟିକୁ ସରସ କରିପାରିଛି । ଏହା ବ୍ୟତୀତ ଓଡ଼ିଆ ଉପନ୍ୟାସ ଜଗତରେ ଅନୁବାଦ ଉପନ୍ୟାସ ମଧ୍ୟ ଲେଖା ଯାଇଛି । ବିଦେଶୀ ଉପନ୍ୟାସକୁ ଓଡ଼ିଆ ଭାଷାରେ ଅନୁବାଦ କରାଯାଇଅଛି । ଏ କ୍ଷେତ୍ରରେ ଉଦୟନାଥ ଷଡ଼ଙ୍ଗୀ, ଚିତ୍ତରଞ୍ଜନ ଦାସ, ପ୍ରଫୁଲ୍ଲ ଚନ୍ଦ୍ର ଦାସ, ଗୋଲକ ବିହାରୀଧଳ, ପ୍ରଭାତ ଚନ୍ଦ୍ର ଶତପଥୀଙ୍କ ନାମ ଉଲ୍ଲେଖଯୋଗ୍ୟ । ଓଡ଼ିଆରେ ଆଉ ଏକ ଧରଣର ଉପନ୍ୟାସ କାହିଁକି ଆଜି କାଲି

ତେର ବେଶୀ । ସେଗୁଡ଼ିକ ସାଧାରଣତଃ ଡ଼ିକ୍‌ଟେକ୍‌ଟିଭ ଉପନ୍ୟାସ । ଦ୍ବେଷ, ଉତ୍କାସୂତ୍ର, ଓ ତାର ରହସ୍ୟ ଉଦ୍‌ଘାଟନ ପାଇଁ ଗୋଇନ୍ଦାଙ୍କର କାର୍ଯ୍ୟଦକ୍ଷତା ଇତ୍ୟାଦି କୌତୁହଳୋଦ୍ଦୀପକ ଏବଂ ରୋମାଞ୍ଚକାରୀ କାହାଣୀହିଁ ଏ ସ୍ତରର ଉପନ୍ୟାସର ଉପଜୀବ୍ୟ । 'ନରବଳୀ' 'ଦସ୍ୟୁନାୟିକା ମିସ୍' 'ନୀଳସିରଜ' ୩୦୩ ରିଭଲଭର ଇତ୍ୟାଦି ଉପନ୍ୟାସ ଏହି ସ୍ତରର । ଏହି ସ୍ତରର ଉପନ୍ୟାସ ପରେ ଆଉ ଗୋଟିଏ ସ୍ତରର ଉପନ୍ୟାସର ମଧ୍ୟ କାଟ୍‌ତି କମ୍ ନୁହେଁ । ସେଗୁଡ଼ିକ ହେଲା ନଗ୍ନ ପ୍ରେମମୂଳକ ବର୍ଣ୍ଣନା ଉପନ୍ୟାସ । ଏଗୁଡ଼ିକୁ କଲିକତି ନଭେଲ ନାମରେ ନାମିତ କରାଯାଇପାରେ । 'ନା ନା ମୁଁ ନର୍ସ', 'ଆସିବ କେବେ ପ୍ରିୟ' 'ଭୁଲ କାହାର' 'ଦୂରବଦେଶୀ' ଇତ୍ୟାଦି ଏହି ସ୍ତରର କେବଳ ଯୌନ ଉତ୍ତେଜନା ବୃଦ୍ଧି କରି ମସ୍ତିଷ୍କକୁ ବିକଳାଙ୍ଗ କରିବା ଛଡ଼ା ଏ ଶ୍ରେଣୀର ଉପନ୍ୟାସର ଅନ୍ୟ କୌଣସି ଗୁଣ ଥିଲାପରି ମନେ ହୁଏନା । ସମାଜର ଉଚ୍ଛୃଙ୍ଖଳତା ପାଇଁ ଏ ପ୍ରକାର ଉପନ୍ୟାସ ଯଥେଷ୍ଟ ଦାୟୀ ।

ସର୍ବଶେଷରେ ଏତିକି କୁହାଯାଇପାରେ ଯେ, ଆଜିର ଉପନ୍ୟାସରେ ଆଦର୍ଶ ଅପେକ୍ଷା ବାସ୍ତବବାଦ ବେଶୀ । ଯେଉଁ ସମାଜରେ ସାମାଜିକ ଜୀବନ ବିପନ୍ନ, ଅର୍ଥନୈତିକ ଅବସ୍ଥା ଦୋଦୁଲ୍ୟମାନ, ଜାତିଗତ ବୈଷମ୍ୟ, ଶୋଷଣ ଲାଗି ରହିଛି ସେ ସମାଜର ଔପନାସିକ କେବଳ ଆଦର୍ଶର ମୋହରେ ଭାସିବା ସମ୍ଭବ ନୁହେଁ । ଆଜିର ଉପନ୍ୟାସରେ ପ୍ରତିବାଦର ସ୍ୱରହିଁ ବେଶୀ । ବାସ୍ତବ ଜୀବନକୁ ରୂପାୟିତ କରିବା, ବିଶୃଙ୍ଖଳ ଓ ବିପର୍ଯ୍ୟସ୍ତ ଦୃଷ୍ଟିଭଙ୍ଗୀରୁ ଚିତ୍ତ ବିକ୍ଷୋଭର ଚାପ ଦେବା, ଅସଂଖ୍ୟ ଅମୀମାଂସିତ ସମସ୍ୟା ସମାଧାନ କରିବା ଆଜିର ଔପନାସିକଙ୍କର ମୁଖ୍ୟ ଲକ୍ଷ୍ୟ । ଏ

ପ୍ରକାର ଔପନାସିକମାନଙ୍କ ମଧ୍ୟରେ ଜ୍ଞାନୀନ୍ଦ୍ର ବର୍ମା, ସୀତାଦେବୀ, ଲବଙ୍ଗଲତା ଦେବୀ, ରାମଚନ୍ଦ୍ର ମିଶ୍ର, ବସନ୍ତ କୁମାରୀ ମହାପାତ୍ର ନୀଳମଣି ସାହୁ, ବିଭୂତି ପଟ୍ଟନାୟକ, ଶାନ୍ତନୁକୁମାର ଆଚାର୍ଯ୍ୟ, କୃଷ୍ଣ ପ୍ରସାଦ ମିଶ୍ର, ସୁରେନ୍ଦ୍ର ମହାନ୍ତିଙ୍କ ନାମ—ଉଲ୍ଲେଖଯୋଗ୍ୟ ।

ଆଜିର ଉପନ୍ୟାସରେ ଦ୍ରୁତ ବିକାଶ ନାହିଁ । ସ୍ତ୍ରୀ ଶିକ୍ଷାର ପରିଣାମ, ପ୍ରେମ, ବିଧବା ବିବାହ, ଜାତିପ୍ରଥା, ଅର୍ଥନୈତିକ ବୈଷମ୍ୟ ପ୍ରାପ୍ତ ପ୍ରଚଳନ ॥ କେବଳ ସେହି ପୁରୁଣା କାହାଣୀକୁ ଘାଣ୍ଟି ଚକଟି ପ୍ରକାଶ କରି ଯାଇଥିବା ଯୋଗୁ ଓଡ଼ିଆ ଉପନ୍ୟାସ ଆଶାନୁରୂପ ଉନ୍ନତି କରି ପାରୁନି । ନୂତନ କଥାବସ୍ତୁର ସନ୍ଧାନ ନେବା ଆବଶ୍ୟକ । ସେଥିପାଇଁ ଧୈର୍ଯ୍ୟ ଓ ଗବେଷଣା ଦରକାର ଯାହାକି ଓଡ଼ିଆ ଔପନାସିକମାନଙ୍କର ନାହିଁ । ଏ କ୍ଷେତ୍ରରେ ପଡ଼ୋଶୀ ବଙ୍ଗ ସାହିତ୍ୟ ଖୁବ୍ ଉଚ୍ଚରେ । ନୂତନ ପୃଷ୍ଠଭୂମିଯୁକ୍ତ ଉପନ୍ୟାସ ରଚନାରେ ସେମାନେ ଯଥେଷ୍ଟ ଆଗରେ । କେବଳ ଗବେଷଣା ଅଭାବରୁ ଓଡ଼ିଶାରେ ଐତିହାସିକ ଉପନ୍ୟାସର ଅଭାବ ପରିଲକ୍ଷିତ ହୁଏ । ତେବେ ଏ କ୍ଷେତ୍ରରେ ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ମହାନ୍ତିଙ୍କ ଉଦ୍ୟମ ପ୍ରଶଂସନୀୟ । ସ୍ୱାଧୀନତା ପରେ ସାର୍ଦ୍ଧ ୨୪ ବର୍ଷ ଗତ ହୋଇଥିଲେ ମଧ୍ୟ ଏ ପର୍ଯ୍ୟନ୍ତ ପ୍ରକୃତ ମନୋବୈଜ୍ଞାନିକ ଉପନ୍ୟାସ ରଚିତ ହୋଇ ପାରିନି । ବୈଜ୍ଞାନିକ ଉପନ୍ୟାସର ଅଗ୍ରଗତି ମଧ୍ୟ ନାହିଁ । ଓଡ଼ିଆ ଉପନ୍ୟାସ ପୂର୍ଣ୍ଣ ସିଦ୍ଧିଲାଭ କରିନାହିଁ । କେବଳ କେବଳ ଗବେଷଣା ଏବଂ ସୂକ୍ଷ୍ମ ଅନୁଭୂତିର ଅଭାବ ହିଁ ଓଡ଼ିଆ ଉପନ୍ୟାସକୁ ବିଶ୍ୱ ଉପନ୍ୟାସ ସ୍ତରରେ ପହଞ୍ଚାଇବାକୁ ଅକ୍ଷମ । କେବଳ କଥାବସ୍ତୁକୁ ଓଲଟାଇ ପାଲଟାଇ ଲେଖିଲେ ଉପନ୍ୟାସ ହୋଇ ଯିବନି । ଉପନ୍ୟାସ ଲେଖିବା ବଡ଼ ଦୁରୂହ ବ୍ୟାପାର ।

ଲେଖକର ଭାବନା, ଅନୁଭୂତି, କ୍ଷୁଦ୍ର କ୍ଷୁଦ୍ର ବ୍ୟାପାର ଉପରେ ଗବେଷଣା, ଉପନ୍ୟାସ ରଚନା ପାଇଁ ଉପାଦାନ ସୃଷ୍ଟି କରେ । ତାର ଉପରେ ବରଂ ହର୍ମ୍ୟ ତିଆରି କରି ଔପନ୍ୟାସିକ ତାର ଉପନ୍ୟାସ ପାଠକମାନଙ୍କ ନିକଟରେ ପହଞ୍ଚାଇ ଥାଏ । ସେଥିପାଇଁ ଯଥେଷ୍ଟ ଶ୍ରମ ଦରକାର । ସର୍ବଶେଷରେ କହିରଖେ ଓଡ଼ିଆ ଉପନ୍ୟାସ ଜଗତର ସମୃଦ୍ଧି ପାଇଁ ଚେଷ୍ଟିତ ଲେଖକବୃନ୍ଦ ସେ ଶ୍ରମ ବରଣ କରିବା ଉଚିତ— ତା ନହେଲେ ଆମର ଗତି ସେମିତି ପଛକୁ ପଛକୁ ।

---

# ଆଧୁନିକ କବିତାର ରୂପରେଖ

ନରେନ୍ଦ୍ର କୁମାର ପଟ୍ଟନାୟକ
ତୃତୀୟ ବାର୍ଷିକ କଳା (ଉଚ୍ଚମାନ)

ନୂତନ ସୃଷ୍ଟି ଓ ସଂଧାନ ହେଲା ମଣିଷର ଧର୍ମ ଓ ସେଇଥିରେ ତାର ବ୍ୟକ୍ତିତ୍ୱ ସାଧନା ଓ ସଂଗ୍ରାମ ନିୟୋଜିତ । ସମୟର ପ୍ରବାହ ଭିତରେ ସଭ୍ୟତା ନୂତନ ରୂପରେଖ ନିଏ । ନୂଆ ନୂଆ ରୂପରେ ଆବିର୍ଭୂତ ହେବା ସମାଜର ଧର୍ମ । ଯାହା ଜାଣିନାହିଁ ଯାହା ଦେଖିନାହିଁ ଯାହା ପାଇ ନାହିଁ ମଣିଷ ସେଇଆକୁ ଜାଣିବାକୁ

ଦେଖିବାକୁ ଓ ପାଇବାକୁ ତତ୍ପର ହୋଇଉଠେ । ତାହାର ଏହି କର୍ମ ଓ ଫଳାଫଳକୁ ଗ୍ରହଣ କରି ସମାଜ ଓ ସଂସ୍କୃତିର ରୂପବଦଳେ, ଏହି ପରିବର୍ତ୍ତିତ ରୂପ ଯାହା ଵିଗତ ଠାରୁ ନୂତନ ରୂପରେ ଦେଖା ଦିଏ ସେଇହେଲା ଆଧୁନିକ । ପ୍ରତିଷ୍ଠିତ ପ୍ରତ୍ୟେକ ଜିନିଷକୁ ନୂତନ ଭାବରେ ପ୍ରତିଷ୍ଠିତ କରିବା, ବଳିଷ୍ଠ ଯୁକ୍ତି ମାଧ୍ୟମରେ ପୁରାତନକୁ ମାନନେବା ହେଉଛି ଆଧୁନିକତାର ବ୍ୟାଖ୍ୟା । ଏହି ଇଚ୍ଛା ଓ ଧର୍ମ ମନୁଷ୍ୟର ମାନସିକ ସମସ୍ୟାମାନଙ୍କରୁ ଜନ୍ମନେଇଥିବା ସମାଜ ସଂସ୍କୃତି ଓ କଳାକୁ ନବନବ ରୁଚିରେ ପରିବର୍ତ୍ତନ କରେ ।

ସାହିତ୍ୟ ଵିଭିନ୍ନତା ମଧ୍ୟରେ ସମନ୍ୱୟ ସଂପାଦନକାରୀ ଏକ ସାମାଜିକ ଓ ନୈତିକ ଶକ୍ତି । ଜଣେ ବ୍ୟକ୍ତିଙ୍କର ମାନସ ପଟରେ ଉପୁଜୁଥିବା ଚିନ୍ତା ଓ ଧାରଣାକୁ ଅନ୍ୟାନ୍ୟଙ୍କ ନିକଟରେ ପରିବେଷଣ କରିବାର ମାଧ୍ୟମ କେବଳ ମାତ୍ର ସାହିତ୍ୟ । ଆଜି ଚନ୍ଦ୍ର ବିଜୟୀ ଯୁଗର ସଭ୍ୟତା, ଚଳଣୀ ରୀତିନୀତି ଯାହା ପ୍ରାଗ୍‌ଐତିହାସିକ ଯୁଗରୁ ଵିଭିନ୍ନ ବିବର୍ତ୍ତ ମଧ୍ୟଦେଇ ଆଜି ବିଂଶ ଶତାବ୍ଦୀରେ ନିଜକୁ ପ୍ରତିଷ୍ଠିତ କରିପାରିଛି ତାହାର ବାହକ ମନୁଷ୍ୟର ଭାଷା ବା ସାହିତ୍ୟ । ତେଣୁ ଏହି ଆଧୁନିକତାର ପରଖ ଏହି ସାହିତ୍ୟରେହିଁ ପ୍ରଥମ ହୋଇଛି ଓ ହେଉଛି ଏହା କହିବା ବାହୁଲ୍ୟ ମାତ୍ର ।

ସାହିତ୍ୟ ଯୁଗାଶ୍ରୟୀ । ଭିନ୍ନ ଭିନ୍ନ ଯୁଗର ଚିନ୍ତା ଓ ସାଂସ୍କୃତିକ ବିବରଣୀକୁ ବକ୍ଷରେ ଧାରଣ କରି ସାହିତ୍ୟ ପ୍ରକାଶିତ ହୋଇଥାଏ । ଋକ୍‌ବେଦର ଚିନ୍ତା ଓ ବିବରଣୀ କାଳିଦାସ ବା ସଂସ୍କୃତ ରୀତିଯୁଗର ଚିନ୍ତାଧାରାକୁ ନେଇ ଗଢ଼ିଉଠିଥିବା ସାହିତ୍ୟଠାରୁ ସ୍ୱତନ୍ତ୍ର ଭିନ୍ନ । ସେହିପରି ସାରଳାଯୁଗର ସାହିତ୍ୟ ପଞ୍ଚସଖାଯୁଗର ବିଭିନ୍ନ ଯୋଗପିଣ୍ଡିତ ମାର୍ଗମାଧ୍ୟମରେ ପ୍ରକାଶିତ ହୁଏ କିମ୍ବା

ଭଞ୍ଜଯୁଗରେ କେବଳ ପ୍ରେମକୁ ମାଧ୍ୟମକରି ଗଢ଼ିଉଠିଥିବା କାବ୍ୟ ଆଧୁନିକ ଯୁଗର ଯୁବ ଲେଖକ ମାନଙ୍କର କବିତା ମାନଙ୍କ ମଧ୍ୟରେ ତାରତମ୍ୟ ମଧ୍ୟ ସେଇ ପର୍ଯ୍ୟାୟଭୁକ୍ତ । ଏହି ସବୁର କାରଣ ସେଇ ପ୍ରଗତିମୂଳକ ଚିନ୍ତାଧାରା ଓ ତାହାକୁ ସାହିତ୍ୟ ମାଧ୍ୟମରେ ପରୀକ୍ଷା ନିରୀକ୍ଷା କରିବାର ଚିନ୍ତା ।

ବିଜ୍ଞାନର ଅଗ୍ରଗତି ଓ ସଭ୍ୟତାର ବିକାଶ ଯେତିକି ଯେତିକି ଅଧିକ ହେଉଛି ମାନବ ଜୀବନ ସେତିକି ପରିମାଣରେ ଜଟିଳରୁ ଜଟିଳତର ଅବସ୍ଥାକୁ ଗତିକରୁଛି । ତାର ଏଇ କର୍ମମୁଖର ଜୀବନ ଓ ମାନସିକ ସଂକଟକୁ କେନ୍ଦ୍ରକରି ଆଧୁନିକ କବିତାର ବିକାଶ ସମ୍ଭବପର ହୋଇଛି । ଅର୍ଥାତ୍ କର୍ମବହୁଳତା, ସମୟର ସ୍ୱଳ୍ପତା ଓ ମନର ଅସ୍ଥିରତା ଆଧୁନିକ କବିତା ସୃଷ୍ଟିର କାରଣ କହିଲେ ଅତ୍ୟୁକ୍ତି ହେବନି । ଅଳ୍ପ ସମୟ ମଧ୍ୟରେ ବହୁତ କାର୍ଯ୍ୟ ସଂପାଦନ କରିବା ଏ ଯୁଗର ପ୍ରଧାନ ଓ ପ୍ରଥମ ଲକ୍ଷ୍ୟ ହୋଇପଡ଼ିଛି । ସେଥିପାଇଁ ମହାକାବ୍ୟରୁ କାବ୍ୟ, କାବ୍ୟରୁ କ୍ଷୁଦ୍ର କବିତାର ଜନ୍ମ । ଆଧୁନିକ ଯୁଗରେ ବ୍ୟକ୍ତିର ଚିନ୍ତା ପରି ପୁରାତନ ଯୁଗରେ ବ୍ୟକ୍ତିର ଚିନ୍ତା ବହୁମୁଖୀ ନଥିଲା । ପୁରାତନ ବ୍ୟକ୍ତିର ଚିନ୍ତା ଥିଲା ସୀମିତ । ଆଧୁନିକ ଯୁଗର ବ୍ୟକ୍ତି ଚିନ୍ତାର ବହୁମୁଖୀନତା କ୍ଷୁଦ୍ର କବିତାର ଜନ୍ମପାଇଁ କେତେକ ପରିମାଣରେ ଦାୟୀ । ଏହି କ୍ଷୁଦ୍ର କବିତା ବା ଆଧୁନିକ କବିତାର ବିକାଶ ପାଇଁ ପତ୍ରପତ୍ରିକାର ବହୁଳ ସୃଷ୍ଟି ଅନସ୍ୱୀକାର୍ଯ୍ୟ ।

ଆଧୁନିକ ମାନବ ଜୀବନ ବହୁ ଆଘାତ ସଂଘାତ ପ୍ରତିଘାତ ଓ ଜଟିଳତାରେ ଜର୍ଜରିତ । ତାର ମାନସିକ ଚିନ୍ତା ମଧ୍ୟ ବିକଳାଙ୍ଗ ଓ ବିଶୃଙ୍ଖଳ ହୋଇପଡ଼ିଛି । ତେଣୁ ଆଜିର କବି ମଧୁର ଗୀତ

ଝଙ୍କାରରେ ମନୋନିବେଶ କରୁନି । ସେ ବର୍ତ୍ତମାନ ଅନୁଭୂତିର ଆବିଷ୍କାରକ । ବିଶେଷକରି ଏ ହତାଶାର ସ୍ୱର କବିମାନଙ୍କ ମନରେ ଦେଖାଦେଇଛି ଦୁଇଟି ବିଶ୍ୱଯୁଦ୍ଧର ପରେ ପରେ । ପ୍ରଥମ ବିଶ୍ୱଯୁଦ୍ଧ ପରେ ଏଜରାପାଉଣ୍ଡ, ଟି. ଏସ୍. ଇଲିଅଟ ଟି.ଇ ହ୍ୟୋମଙ୍କ ରଚନା ମଧ୍ୟରେ ଇଂରେଜୀ ସାହିତ୍ୟର ନୂତନ ଦିଗନ୍ତର ଉଦ୍‌ଘାଟନ ହେଲା । ଏଥିରେ ଦଳିତ, ନିର୍ଯ୍ୟାତିତ, ଅଧଃପତିତ ଶ୍ରେଣୀକୁ ନେଇ କବିତା ମାନ ରଚିତ ହେଲା । ଅନ୍ୟପକ୍ଷରେ ରୁଷବିପ୍ଳବର ସାଫଲ୍ୟ କବିତା କ୍ଷେତ୍ରରେ ଏକ ନୂତନ ଦିଗକୁ ଉଦ୍‌ଭାସିତ କରିବାରେ ସମର୍ଥ ହେଲା । ଡାଏଲେକ୍‌ଟିକ୍ ମେଟେରିଆଲିଜମ୍ ଦ୍ୱାରା ଗ୍ରୁପ୍ୟାବାଦୀ ଓ ମାର୍କ୍ସ-ବାଦୀ କବିମାନଙ୍କର ଅବାସ୍ତବ ସଂସାରର ଭିତ୍ତି ଦୋହଲି ଗଲା । ବୋଲ୍‌ଜେଭିକ ପ୍ରାଂସ୍କଙ୍କର ସମ୍ମିଳିତ ଚେର୍ନ ସେଭିସ୍କଙ୍କର ରିଏଲିଜମ୍ ତଥା ଲେଲିନ୍‌ଙ୍କର ରିଏଲିଜମ୍‌ର ପ୍ରସାର ହେତୁ ସାହିତ୍ୟ କ୍ଷେତ୍ରରେ ଏକ ବିରାଟ ପରିବର୍ତ୍ତନ ଦେଖାଦେଲା । ଏହାପରେ ପ୍ରଗତିବାଦୀ କବିତାର ହେଲା ଆବିର୍ଭାବ ।”

(ଝଙ୍କାର—୨୦ ବର୍ଷ ଏକାଦଶ ସଂଖ୍ୟା, ଆଧୁନିକ କବିତାରେ ବ୍ୟକ୍ତି ଓ ବିଶ୍ୱ) ।

ଆଧୁନିକ କବିମାନଙ୍କର ଗଭୀର ଅଧ୍ୟବସାୟ ଓ ଅଧ୍ୟୟନ ଯୋଗୁଁ ଆହରିତ ଜ୍ଞାନ ଅନିବାର୍ଯ୍ୟ ଭାବରେ କବିତାରେ ପ୍ରତିଫଳିତ ହୋଇଅଛି । ତେଣୁ କବିତା କ୍ଷେତ୍ରରେ Futerism, Imagism, Symbolism, Surrealism ଇତ୍ୟାଦିର ଆବିର୍ଭାବ ଦେଖାଦେଲା ଓ ଏଥିରେ ଅଧିକ ପରିମାଣରେ ମାନସିକ ଅଭିଜ୍ଞତାଜାତ ଚିନ୍ତା-ଧାରାର ବହିଃପ୍ରକାଶ ହେଲା ।

୧୮୯୦ ଖ୍ରୀଷ୍ଟାବ୍ଦରେ ଫ୍ରେଞ୍ଚ ସାହିତ୍ୟରେ ପ୍ରତୀକବାଦ, ଏକ ନୂତନ ବାଦରୂପେ ରହସ୍ୟବାଦ ଓ ଆଧ୍ୟାତ୍ମିକ ବାଦର ଭିତ୍ତି ଉପରେ ପ୍ରତିଷ୍ଠିତ ହୋଇ ନିଜକୁ ବିଶୁଦ୍ଧତାବାଦରୂପେ ପ୍ରତିଷ୍ଠିତ କରିବାରେ ସମର୍ଥ ହୋଇ ପାରିଲା । ଏହି ପ୍ରତୀକବାଦୀ କବିମାନେ ପାଠକ ମନରେ ନିର୍ଦ୍ଦିଷ୍ଟ ଆତ୍ମଜ୍ଞାନ ସୃଷ୍ଟି କରୁଥିବା କବିତାକୁ ଶ୍ରେଷ୍ଠ ସ୍ଥାନ ଦେବା ସାଥେ ସାଥେ ମତଦେଲେ ଯେ ସେଇ ହେଉଛି ଶ୍ରେଷ୍ଠ କବି ଯେ କି ସବୁର ସୂଚନା ଦିଏ, ସବୁର ପ୍ରକାଶ କରେ ମାତ୍ର ସଂଜ୍ଞା ଦିଏନା । ଅନ୍ୟ ପକ୍ଷରେ ସେମାନେ କାବ୍ୟିକ ଅନୁଭୂତି ଦ୍ୱାରା ଅନ୍ତର୍ଜଗତ ଓ ବହିର୍ଜଗତ ମଧ୍ୟରେ ଯୋଗସୂତ୍ର ସ୍ଥାପନ କରିବାକୁ ଚିତ୍ରକଳ୍ପ ଓ ଶବ୍ଦ ସହିତ ଅଧିକମାତ୍ରାରେ ସଂପର୍କଶୀଳ ହୋଇ ପଡ଼ିଲେ; ମାତ୍ର ଭାବଧାରଣା ଓ କାବ୍ୟ ସହିତ ନୁହେଁ । ତେଣୁ କବିତାରେ ବ୍ୟବହୃତ ଶବ୍ଦ ଗୁଡ଼ିକ କବିର ସୃଜନକାରୀ କଳ୍ପନା ଯୋଗୁ ଅସାଧାରଣ ହୋଇପଡ଼ିଲେ । ତେଣୁ ପ୍ରତୀକବାଦୀ କବିତା ଗୁଡିକ ପାଠକର ବିଭିନ୍ନ ସ୍ତରକୁ ସ୍ପର୍ଶ କରିବାର କ୍ଷମତା ଧାରଣ କରିଥିଲେ ମଧ୍ୟ ସୂକ୍ଷ୍ମାତି ସୂକ୍ଷ୍ମ ଗଭୀର ଭାବ ଓ ଅତିମାତ୍ରାରେ କଳ୍ପନାଶ୍ରୟୀ ଏହାକୁ କ୍ଲିଷ୍ଟ କରିପକାଇଲା । ଏତଦ୍‌ବ୍ୟତୀତ ବିଭିନ୍ନ ଲୋକକଥାରୁ ବିଭିନ୍ନ ପ୍ରକାର ପ୍ରତୀକର ଆନୟନ କରି ତାର ବ୍ୟବହାରରେ କବିତାକୁ କ୍ଲିଷ୍ଟଭାବାପନ୍ନ କରିଦେଇଛନ୍ତି ।

ପ୍ରତୀକ ଅପେକ୍ଷା ରୂପକଳ୍ପ ଚିତ୍ରକଳ୍ପ ଗୁଡ଼ିକର ବ୍ୟବହାର ମଧ୍ୟ ଆଧୁନିକ କବିତା କ୍ଷେତ୍ରରେ ଏକ ନୂତନ ଉଲ୍ଲେଖଯୋଗ୍ୟ ସ୍ଥାନର ଅଧିକାରୀ ହୋଇପଡ଼ିଛି । କବିତାରେ ମନର ଭାବକୁ ବ୍ୟକ୍ତକରିବା ପାଇଁ ଯେଉଁ ରୂପକଳ୍ପ ବା ଚିତ୍ରକଳ୍ପକୁ ମାଧ୍ୟମ କରି କବିତା ପ୍ରକାଶ କରେ ତାହା ମନୋଜ୍ଞ ଦୃଷ୍ଟିମାନଙ୍କ ମଧ୍ୟରେ ଏକ ବଳିଷ୍ଠ

ପଦବିକ୍ଷେପ ହେଲେ ମଧ୍ୟ ସାଧାରଣ ପାଠକ ନିକଟରେ ଏହା ଦୁର୍ବୋଧ ହୋଇପଡ଼େ । ଉଦାହରଣ ସ୍ୱରୂପ ସଚ୍ଚି ରାଉତରାୟଙ୍କ କବିତାଂଶଟି ଏଠାରେ ଗ୍ରହଣୀୟ—

"ବସନ୍ତ ଆସେ ଯେ ଠେଲି
ଧକ୍କା ଖାଇ କୁକୁଡ଼ାର ବିହେ
ଭାଙ୍ଗି ବିନ୍ଦୁ ମହୁର ସେରାଇ
ମାଟିରେ ଗଡ଼ାଇ ଅବା ଫୁଲବଣ ଫାଙ୍କେ ।"

ନିଖିଳ ବିଶ୍ୱସହିତ ଏକତ୍ୱ ଭାବାପନ୍ନ ହେବା ଆଧୁନିକ କବିମାନଙ୍କର ଏକ ବିଶେଷତ୍ୱ । ପ୍ରଥମେ ସେମାନେ ବହିର୍ଜଗତ ସହିତ ନିଜକୁ ସାମିଲ କରି ତାର ବାହାରେ ଥିବା ବସ୍ତୁର ସୌନ୍ଦର୍ଯ୍ୟ ଦର୍ଶନ କରିଥାନ୍ତି । ପ୍ରଂପ୍ରେଡ଼ୀୟ ଚିନ୍ତାଫଳରେ ମନୁଷ୍ୟର ଅନ୍ତର୍ଦ୍ଦ୍ୱନ୍ଦ୍ୱିତ ବିଶ୍ୱସମ୍ବନ୍ଧ ନୂତନ ଚିନ୍ତାମାର୍ଗରେ ପ୍ରକାଶିତ ହେଲା । ମନୁଷ୍ୟର ଭୌତିକ, ମାନସିକ, ଦୈହିକ, ଅଚେତନ ସଭିବିଶିଷ୍ଟ ବ୍ୟକ୍ତି ବିଶ୍ୱର ଇୟତାକୁ ଜ୍ଞାତସାରରେ ଆଣିବାକୁ ଚେଷ୍ଟିତ ହେଲେ । ସୁତରାଂ ଆଧୁନିକ କବିତାରେ ବ୍ୟକ୍ତିଚିନ୍ତା ବିଚିତ୍ର ଓ ବିସ୍ମିତ ରୂପ ଗ୍ରହଣ କରିବାରେ ସମର୍ଥ ହେଲା । ଉଦାହରଣ ସ୍ୱରୂପ—

"ସମସ୍ତଙ୍କ ନାକତଳେ ଦିନ ଦିପହରେ ଏଇଦେଖ ମୃତ୍ୟୁ ଏଠି
ବୁଲୁଅଛି ମୋ ସହିତ ମୋ କାନ୍ଧରେ ତାହାର ଉଷ୍ମ ପାପୁଲି
ତବଲା ବଜାଏ ଖାଲି; ମୃତ୍ୟୁପୁଣି ଆମଘରେ ହଳଦୀ ବାଟୁଛି !"
(ମୃତ୍ୟୁପରି ଦୁଏ ଏକ ନଦ— ଦୀପକ ମିଶ୍ର)

ଆଧୁନିକ କବିତାରେ ବୌଦ୍ଧିକତା ପ୍ରଧାନ ସ୍ଥାନ ଅଧିକାର କରିଛି କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ କେବଳ ବୁଦ୍ଧିର ଗାରିମା ବା ବହିଃପ୍ରକାଶ କଦାପି କବିତାର ପ୍ରଧାନ ଗୁଣ ନୁହେଁ ।

ଏବ୍ଂ ବୌଦ୍ଧିକତା ରସାତ୍ମକତାକୁ ହତ୍ୟାକରି କବିତାକୁ ଶୁଷ୍କ କରି ଦେଉଛି ଏବ୍ଂ ବୁଦ୍ଧିମୂଳକ କବିତା ଗୁଡ଼ିକ ଭାବ ଓ ଭାଷାର ଅସଂଲଗ୍ନ-ତାର ଉଦାହରଣ ଦେଇଥିଲେ ମଧ୍ୟ କବିର ପରୋକ୍ଷ କଥନ ଏବଂ ବ୍ୟାପକତାର ପ୍ରବାହମାନ ଭିତରେ କବିତାଟିକୁ ରସମଯ୍ କରି-ଥାନ୍ତି । ଅନ୍ୟ କେତେକ ସ୍ଥଳରେ କବିର ଅନୁଭୂତିର ଅତନ୍ମୟତା ଓ ସାଂକେତିକ ଦୁର୍ବୋଧତା ଏହାର ମାଧ୍ୟମରେ ପ୍ରକାଶିତ ମଧ୍ୟ ହୋଇଥାଏ । ଯଥା—

"ଓଠର ଟେବୁଲ ପାଖେ
କାଳର କ୍ୟାଟର ମୁଁ ଠାରେ !
କୋଟି କୋଟି ସ୍ୱପ୍ନର ମେନ୍ୟୁରଖି
ଉମୂର୍ତ୍ତ ବାସନା ମୁଁ, ଠାରେ
ଆଦେଶ ଦିଅ ପ୍ରୀତିର
ଅଗ୍ନିମୟୀ ପ୍ରୀତିର ।"
(ଅନନ୍ତ ପଟ୍ଟନାୟକ)

ରସାତ୍ମିକ ଚରଣ ଆଧୁନିକ କବିତାର ଅନ୍ୟଏକ ବିଶେଷତ୍ତ୍ୱ ଏଥିରେ ବୌଦ୍ଧିକତା ଓ ଦୁର୍ବୋଧ ରୂପକଳ୍ପାଦିର ପ୍ରୟୋଗ ନଥିବାରୁ ଏହା ଅଧିକ ଉପଭୋଗ୍ୟ ଓ ବୋଧଗମ୍ୟ ଭାବରେ ପାଠକ ନିକଟରେ ପରିବେଶିତ ହୋଇଥାଏ । ଜାନକୀବଲ୍ଲଭ ମହାନ୍ତିଙ୍କ "ହଜିଲା ଦିନର କଥା" ଏଇ କବିତାର ଏକ ଜ୍ୱଳନ୍ତ ଉଦାହରଣ ହିସାବରେ ଗ୍ରହଣ କରାଯାଇ ପାରେ । ଯଥା—

ତଥାପି ମୁଁ ଅଲ୍ଲଜ୍ଞା ଗୁହେଁ ମୋର ପାଉଁଶ ମୁହଁରେ
କାଳେ ତୁମେ ଆସୁଥିବ ପାଦପାକ ଧୂଳି ସରି ସରି
କାଳେ ତୁମେ ଛତାବାଡ଼ ରଖିଦେଇ ଦୁଆର ବନ୍ଧରେ
ପାଣିଟାଳେ ମାଗୁଥିବ ଭୋକରଖି ଗୁରୁବରଷର ।"

ଆଧୁନିକ କବିତାରେ ଆଧୁନିକ ଯୁଗ ଯନ୍ତ୍ରଣାକ୍ରାନ୍ତ ମନର ବହିଃସ୍ଫୁରଣ ଅଧିକ ମାତ୍ରାରେ ଦେଖିବାକୁ ମିଳେ । ପଳାୟନ-ବାଦୀ କବିମାନଙ୍କର 'ପଦ୍ମଭୂକର' କଳ୍ପନା ବା ମଦ୍ୟମ ସ୍ୱପ୍ନ କଳ୍ପନା ଠାରୁ ଏମାନେ ବହୁତ ଦୂରରେ । ବରଂ ନିଜର କଳ୍ପନା ପ୍ରାଚୁର୍ଯ୍ୟ ଓ ଆବେଗର ଆତିଶଯ୍ୟ ମଧ୍ୟଦେଇ ନିଜର ନିପୀଡ଼ିତ ଆତ୍ମାର ଯନ୍ତ୍ରଣା (Romantic agnry) କୁ ଏମାନେ କବିତା ମାଧ୍ୟମରେ ରୂପ ଦେଇଥାନ୍ତି । ଏହାର କାରଣ ବର୍ତ୍ତମାନ ସାମାଜିକ ସ୍ତରରେ ବିଦ୍ୱେଷ, ଅଶାନ୍ତି, ଅବିଶ୍ୱାସ, ଅନାସ୍ଥାଭାବ ବେକାରି ଜୀବନର ଝଡ଼ ଝଞ୍ଜା ହୋଇପାରେ । ଜନ୍ମ ଓ ମୃତ୍ୟୁର ଜୁଆଖେଳରେ ଆଧୁନିକ ଜୀବନ ଅସ୍ଥିର ।

ଆଧୁନିକ ଯୁଗର କବିମାନେ ନିଜର ଆତ୍ମାନୁଭୂତିକୁ ପ୍ରକାଶ କରିବା ପାଇଁ ଯେଉଁ ମାଧ୍ୟମକୁ ଧରିନେଲେ ତାହାହେଉଛି ମୁକ୍ତଛନ୍ଦ ବା ବନ୍ଧନ ହୀନତା । ତେବେ ଆଧୁନିକ ସମସ୍ତ କବି ଯେ ଏଇ ମୁକ୍ତଛନ୍ଦର ପକ୍ଷପାତି ତାହାନୁହେଁ, କିନ୍ତୁ ମୁକ୍ତଛନ୍ଦରେ କବିତା ଲେଖିବାକୁ ଆଧୁନିକ ଯୁଗର କବିମାନେ ଅଧିକ ପସନ୍ଦ କରୁଥିବା ଭଳି ଜଣାଯାଏ । ଏହି ମୁକ୍ତ ଛନ୍ଦର ପ୍ରୟୋଗ ଆଧୁନିକ କବିମାନଙ୍କ ଲେଖାରେ ସାଧାରଣତଃ ତ୍ରିବିଧ ଉପାୟରେ ହୋଇଥାଏ ।

୧) ଗତିଲୟଧାରୀ ମୁକ୍ତଛନ୍ଦ (୨) ଆଂଶିକ ଗଦ୍ୟାତ୍ମକ ମୁକ୍ତଛନ୍ଦ ୩) ପୂର୍ଣ୍ଣ ଗଦ୍ୟାତ୍ମକ ମୁକ୍ତ ଛନ୍ଦ ।

ଏ ଯୁଗରେ ଗଦ୍ୟର ପ୍ରାଧାନ୍ୟ ହେତୁ କବିତାମାନଙ୍କରେ ଗଦ୍ୟର ପ୍ରଭାବ ପଡ଼ିବା ସ୍ୱାଭାବିକ । ଅନ୍ୟକଥାରେ କହିବାକୁ ଗଲେ ବାକ୍‌ଖଣ୍ଡ ଓ ବାକ୍ୟଖଣ୍ଡର ମଧୁର ସମନ୍ୱୟରେ ଆଧୁନିକ କବିତା ପ୍ରକାଶ ହୋଇଛି । ଯଥା :—

ଧୂଷର ବିକଟ ମଶାଣୀରେ ବସି,
ଏକା ମୁଁ ଅଙ୍କ କଷେ······
ଉପରେ ଆକାଶ—ଶୂନ୍ୟଆକାଶ·········
(ଆବର୍ତ୍ତନ—ବିନୋଦ ରାଉତରାୟ)

କେତେକ ଆଧୁନିକ କବିତାରେ ଏକାଧିକ ମୁକ୍ତଛନ୍ଦର ବ୍ୟବହାର ମଧ୍ୟ ଦେଖାଯାଏ । ଉଦାହରଣ ସ୍ୱରୂପ ଅନନ୍ତ ପଟ୍ଟନାୟକଙ୍କ 'ଆସିବ ମୁଁ ଆସିବ"—

"ଲଙ୍କାର ପଥରୋଧକାରୀ କି ? ଦୁସ୍ତର ।
ଶସ୍ୟର ସ୍ଥିତିରୋଧକାରୀ କିଏ ? ପଙ୍ଗପାଳ ।
ଆତ୍ମାର କଣ୍ଠରୋଧକାରୀ କିଏ ? ଆତତାୟୀ
ଅନିରୁଦ୍ଧ ସ୍ମୃତି ମୋର ଛୁଟେ
ଦିକ୍ ଦିଗନ୍ତ ଛୁଟେ···········"

ଉକ୍ତ ପଦ୍ୟାଂଶଟିରେ ଗଦ୍ୟଲୟଧର୍ମୀ ମୁକ୍ତଛନ୍ଦ ଓ ଆଂଶିକ ଗଦ୍ୟାତ୍ମକ ମୁକ୍ତଛନ୍ଦର ମିଶ୍ରିତ ପରିପ୍ରକାଶ ଘଟିଛି । ତେବେ ଆଧୁନିକ କବିତାରେ ନୂତନ ଛନ୍ଦର ପ୍ରୟୋଗ ଯେତେ ଉନ୍ନତ ଧରଣର ହେଲେ ମଧ୍ୟ ପୁରାତନ ଛନ୍ଦଗୁଡ଼ିକ ପରିତ୍ୟାଗ କରିବା ଦ୍ୱାରା କବିତା ରସଆନନ୍ଦର ଅପୂରଣୀୟ କ୍ଷତି ଘଟିଛି । ଏହାକୁ ଲକ୍ଷ୍ୟ ରଖି ପ୍ରଫେସର ଫିଲିନୋର (Phillinor) ଥରେ କହିଥିଲେ ନିୟମ ନଥିବା ଖେଳ ଯାହା, ନୂତନ କବିମାନେ ନୂଆଖେଳ ସୃଷ୍ଟି କରୁଛନ୍ତି; କିନ୍ତୁ ସେ ଖେଳର ନିୟମ ରହିବା ଆବଶ୍ୟକ ବୋଲି ମତ ପ୍ରକାଶ ପାଉଛି ।

ବକ୍ରୋକ୍ତି ଏକ ସମୟରେ ବିଭିନ୍ନ ଅର୍ଥପ୍ରକାଶ ପ୍ରାକୃତ ସଂସ୍କୃତ ଭାଷାର ଏକତ୍ର ସମାବେଶ, ପ୍ରଶାନ୍ତ କବିତା ମଧ୍ୟରେ ସରଳ ହାସ୍ୟର ପ୍ରୟୋଗ ଆଧୁନିକ କବିତାରୁ ଏକ ରକମ ବିଦାୟ

ନେଇଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଆଧୁନିକ ସାମ୍ପ୍ରତିକ କବିମାନେ କ୍ଲିଷ୍ଟ ଶବ୍ଦର ପ୍ରୟୋଗକୁ ଯେ ବାଦ ଦେଇଛନ୍ତି ତାହାନୁହେଁ, ବରଂ ଅନ୍ୟାନ୍ୟ ଭାଷାମାନଙ୍କରୁ କେତେ ଗୁଡ଼ିକ ଶବ୍ଦ ଆହରଣ କରି ଓ କେତେଗୁଡ଼ିଏ ପ୍ରବଚନ ବା Term ମାନ ସଂଗ୍ରହ କରି କବିତାର କଳେବରକୁ ସୁସଜ୍ଜିତ କରିବା ପାଇଁ ଚେଷ୍ଟିତ । ଏହା ଏକ ପ୍ରଶଂସନୀୟ କାର୍ଯ୍ୟ ଓ ଏହାଦ୍ୱାରା ଭାଷାମାନଙ୍କର ଶବ୍ଦ-ଭଣ୍ଡାର ଯେ ଋଦ୍ଧିମନ୍ତ ହେବ ଏହା ସ୍ୱୀକାର୍ଯ୍ୟ, ମାତ୍ର । ଏ ପ୍ରକାର ଶବ୍ଦ ଗୁଡ଼ିକର ବ୍ୟବହାର ଯେ କବିତାକୁ ଅତ୍ୟଧିକ ଦୁର୍ବୋଧ ଓ କ୍ଲିଷ୍ଟ କରି ଦେଉଛି ଏହା ନିଃସନ୍ଦେହ ।

ଆଧୁନିକ କବିର ଦୃଷ୍ଟି ସୁଦୂର ପ୍ରସାରୀ । ନିଜର ଭାଷା ଓ ଦେଶର ନିଗଡ଼ ମଧ୍ୟରେ ସେ ନିଜକୁ ବନ୍ଧନ କରି ରଖିବାକୁ ଚାହେଁନା । ସେ ଚାହେଁ ନିଜକୁ ଆନ୍ତର୍ଜାତିକ କ୍ଷେତ୍ରରେ ପ୍ରତିଷ୍ଠିତ କରାଇବାକୁ । ତା ନିକଟରେ ଅଷ୍ଟ୍ରେଲିଆର ଗହମ କ୍ଷେତ, ସାହାରାର ମରୁଭୂମି କି ପ୍ରଶାନ୍ତ ମହାସାଗରର ଫେନିଳ-ବୀଚି କେବେ ଦୂରର ନୁହେଁ । ଆଧୁନିକ କବିମାନେ ବିଶ୍ୱର ପ୍ରତ୍ୟେକ ଶ୍ରେଣୀ ଓ କୋଣାନୁ-କୋଣର ଅଧିବାସୀଙ୍କ ମନକୁ ସୁହାଇଭଳି ଚିନ୍ତାଧାରା ଓ ଚିତ୍ରକଳ୍ପ ପ୍ରତୀକ ଇତ୍ୟାଦିର ବ୍ୟବହାର କରିବାର ପକ୍ଷପାତୀ, ଯଥା-

କୁସ୍ତୁସି ନିଆର କଞ୍ଚାଡ଼ାହାଣୀଟା
ପିଏ ତାର ପିଲା ଖାଇଥିଲା
ମନ୍ତ୍ରବଳେ ହେଲା ବଶ
ଜନ୍ମ ହେଲା ନୂଆଁକରି ପୁଣି
ଜାହାଜ ଉଡ଼ିଲା ଯାଇ
ଜାପାନ କୂଳରେ

ବନ୍ଧ ହୋଇଗଲା ।
କପା ମଞ୍ଜି ସବୁ ବନ୍ଧ ହୋଇଗଲା ।
(ଆତ୍ମନେପଦୀ-ତାରିଣୀ ଚରଣ ଦାସ)

ଅନ୍ୟ ଅର୍ଥରେ କହିବାକୁ ଗଲେ ଆଧୁନିକ କବିର କବିତା ଭାଷାନ୍ତରିତ ହେଲେ ସେହି ଭାଷାଭାଷୀ ଅଞ୍ଚଳରେ ଏହା ଜନାଦୃତ ହେବ, ଏହା ସୁନିଶ୍ଚିତ ।

ପରିବର୍ତ୍ତନହିଁ ଦୁନିଆର ଅପରିବର୍ତ୍ତନୀୟ ନିୟମ । ତେଣୁ କୁହାଯାଇଛି-ଅପରିବର୍ତ୍ତନୀୟ ହିଁ ଏକ ଜଡ଼ତା ମୃତ୍ୟୁ । ତେଣୁ ନୂତନତା ବା ପରିବର୍ତ୍ତନ ବିନା ସାହିତ୍ୟ, କଳା, ଜୀବନ ସମସ୍ତେ ସ୍ୱାଦହୀନ ହୋଇ ପଡନ୍ତି । ତା ବୋଲି ଯେ କବିତାର ପରିବର୍ତ୍ତନ କାମନା କରି ପାଠକମାନେ ନବୁଝିଲା ଭଳି କବିତା ରଚନା କରିବା ଉଚିତ ନୁହେଁ । ବରଂ ଏପରି ହେଲେ ପାଠକମାନଙ୍କ ନିକଟରୁ କବିତା ଖାପଛଡ଼ା ହୋଇ ପାଠକ ଓ କବି ମଧ୍ୟରେ ବିଭେଦତାର ପ୍ରାଚୀର ତୋଳେ । କବିର କର୍ମ କବିତା ମାଧ୍ୟମରେ ସାମାଜିକ ମନର ଖୋରାକ ଯୋଗାଇବା ଓ ଶିକ୍ଷା ଦାନ କରିବା । ତେଣୁ କବିକର୍ମ ଯେତିକି ସହଜ ସେତିକି କଠିନ । ତେଣୁ ଆଧୁନିକ ଯୁଗର କବିମାନେ ଏହିସବୁ ଦିଗରୁ ଭାରସାମ୍ୟ ରକ୍ଷାକରି ପଦକ୍ଷେପମାନ ନେବା ଉଚିତ ।

—*—

# ଗାଳ୍ପିକ ସୁରେନ୍ଦ୍ର ମହାନ୍ତି
# ଓ
# 'ମରାଳର ମୃତ୍ୟୁ'

ସାହିତ୍ୟ କେବଳ ଅବସର ବିନୋଦନର ସୃଷ୍ଟି ହୋଇ ଆଜି ଆଉ ନାହିଁ । ଯୁଗ ବଦଳିଛି । ମାନବ ଜୀବନର ଚିନ୍ତା ରାଜ୍ୟରେ ବହୁ ଭାବର ଓ ମତବାଦର ସ୍ରୋତ ଗୃଳିଛି । ତା ସହିତ ସାହିତ୍ୟ ପ୍ରାଚୀନ ପରମ୍ପରା ଓ ଶୈଳୀରୁ ମୁକ୍ତିନେଇ ନୂତନ ରୂପରେ ଆବିର୍ଭୂତା ହୋଇଛି । ଆଜିର ସାହିତ୍ୟ ମାନବ ଜୀବନର ଶୈଳ୍ପିକ ଅଭିବ୍ୟକ୍ତି ମାତ୍ର । ଜୀବନ-ରାଜରାସ୍ତାର ପଥପ୍ରାନ୍ତେ ବହୁ ଉପେକ୍ଷିତ ଓ ନିଷ୍ପେଷିତ ବ୍ୟକ୍ତିର ଛବି ଆଜିର ସାହିତ୍ୟରେ ଯେତିକି ସ୍ପଷ୍ଟ ଆଧ୍ୟାତ୍ମିକ ଚିନ୍ତାଶୂନ୍ୟ 'ମାନବର' ବନ୍ଦନା ଓ ଜୀବନର ଗଭୀର ମୂଲ୍ୟବୋଧ ପ୍ରତି ବିତୃଷ୍ଣ ଜନତାର ଚିତ୍ରରେ ମଧ୍ୟ ତାହା ସେତିକି ଉଜ୍ଜ୍ୱଳ । ଆଧୁନିକ କ୍ଷୁଦ୍ରଗଳ୍ପ ସମସ୍ୟା ବହୁଳ ବିଂଶ ଶତକର ଜୀବନ ପ୍ରତି ଯେତେ ସଚେତନ, ସାହିତ୍ୟର ଅନ୍ୟବିଭାଗଗୁଡ଼ିକ ସୀମିତ ପରିସର ମଧ୍ୟରେ ଏପରି ଝଲିଲଇଟର ଆଲୋକ ଦେଇ ପାରନ୍ତି ନାହିଁ ।

ଆଧୁନିକ କ୍ଷୁଦ୍ରଗଳ୍ପ ଏକପ୍ରକାର ନୂତନ ରୂପ-ସୃଷ୍ଟି । ପାଶ୍ଚାତ୍ୟ ସାହିତ୍ୟଠାରେ ଆମେ ଯେ ଏ କ୍ଷେତ୍ରରେ ଋଣୀ—ଏହା ଅସ୍ୱୀକାର କରାଯାଇ ନ ପାରେ । ଅବଶ୍ୟ ଆମ ସାହିତ୍ୟରେ ଗଳ୍ପର

ପରଂପରା ବେଶ ପ୍ରାଚୀନ । କିନ୍ତୁ ଆଧୁନିକ ଅର୍ଥରେ କ୍ଷୁଦ୍ର ଗଳ୍ପକୁ ଯେପରି ଭାବରେ ଉପସ୍ଥାପିତ ଓ ମୂଲ୍ୟାଙ୍କନ କରାଯାଇଛି, ସେ ଦୃଷ୍ଟିରୁ ଆମର ଗାଳ୍ପିକମାନେ ପାଶ୍ଚାତ୍ୟ ସଂସ୍କୃତିର ଅଧିକ ନିକଟବର୍ତ୍ତୀ । କ୍ଷୁଦ୍ରଗଳ୍ପ ଏକ ମୁହୂର୍ତ୍ତର ସାର୍ଥକ ସୃଷ୍ଟି । ପ୍ରାଚୀନ ଗଳ୍ପପରି ଏହା ଯଥେଚ୍ଛାବିହାରୀ, କାହାଣୀ ସର୍ବସ୍ୱ ଓ ନିରୁଦ୍ଦେଶପନ୍ଥୀ ନୁହେଁ ବରଂ ଆଜିର ଲେଖକ ବିଷୟ ବସ୍ତୁ, ଚରିତ୍ରସୃଷ୍ଟି, ସଂଳାପ, ପରିବେଶ ସୃଷ୍ଟି, ବାଣୀଭଙ୍ଗୀ ପ୍ରତ୍ୟେକ ବିଷୟରେ ସମସ୍ୟା ସଚେତନ ଓ ଆତ୍ମ ସଚେତନ । ଜୀବନର ଗଭୀର ଅନୁଭୂତିରୁ ଏହାର ଜନ୍ମ । କିନ୍ତୁ ମାନବ ଜୀବନର ଗଭୀର ରହସ୍ୟ ଭେଦ କରିବାର ଧୃଷ୍ଟତା ଗଳ୍ପକାର କରେନାହିଁ । ଜୀବନର ଅବିରାମ ସ୍ରୋତରେ କ୍ଷଣପ୍ରାଣ ଓ କ୍ଷଣ ବିଳାସମାନ ଯେଉଁସବୁ ତରଙ୍ଗ ଉଠେ, ପଡ଼େ, ଭାଙ୍ଗେ, ସେହି ସବୁକୁ ହିଁ ଲେଖକ ସ୍ଥିର ଦୃଷ୍ଟିରେ ନିରୀକ୍ଷଣ କରିଥାଏ । ଏ କ୍ଷେତ୍ରରେ ନାଟକ ଉପନ୍ୟାସ ବା ମହାକାବ୍ୟର ବିସ୍ତୃତି ନାହିଁ—ଜୀବନର ଖଣ୍ଡରୂପ ଏଠାରେ ଏକ ବିଶେଷ ରୂପରେ (Form) ଧରାଦିଏ । ତେଣୁ ସମାଲୋଚକ ଏହାକୁ ସମଚତୁଷ୍କୋଣର ଠିକ୍ କେନ୍ଦ୍ର ବିନ୍ଦୁରେ ଅବସ୍ଥାପିତ କରିଥାନ୍ତି; ଯେଉଁ ସମଚତୁଷ୍କୋଣର ଚାରୋଟି ବାହୁ ଅଟନ୍ତି— (କ) ବର୍ଣ୍ଣନାତ୍ମକ ନିବନ୍ଧ (ଖ) ଗୀତି କବିତା (ଗ) ଗଦ୍ୟ ନାଟକ (ଘ) ସ୍ଥାନୀୟ ସାମାଜିକ ଇତିହାସ ।

ଏହି ରୂପସୃଷ୍ଟିକୁ ସାର୍ଥକ କରିବାପାଇଁ ଲେଖକ ଗଳ୍ପର ଉପାଦାନ ଓ ଭାବବିନ୍ୟାସକୁ ଏକମାତ୍ର ପରିଣାମ ମୁଖୀ କରିବାକୁ ଚେଷ୍ଟା କରନ୍ତି । ଇଂଗିତ-ମଧୁରତା ହିଁ କ୍ଷୁଦ୍ରଗଳ୍ପର ଆକର୍ଷଣ । ଏଥିରେ କୁହାକଥା ଅପେକ୍ଷା ଅକୁହାକଥା ବେଶୀ । ସ୍ୱଳ୍ପସଂଖ୍ୟକ ସୁନିର୍ବାଚିତ ଚରିତ୍ର ସାହାଯ୍ୟରେ ଇଂଗିତପୂର୍ଣ୍ଣ ପରିସ୍ଥିତି ଲଭିହିଁ

କ୍ଷୁଦ୍ରଗଳ୍ପର ଉଦ୍ଦେଶ୍ୟ । ଉପନ୍ୟାସ ବା ନାଟକରେ ପରିତୃପ୍ତି ଅଛି । ମାତ୍ର କ୍ଷୁଦ୍ର ଗଳ୍ପରେ ହୃଦୟର ଖିନ୍ନତା ଓ ସତ୍ୟର ବ୍ୟଞ୍ଜନା ହିଁ ନିହିତ । ଗୀତିକାବ୍ୟର ମଧୁରତା ସହ ବଂଶୀର ମଧୁର ମୋହନ ମୂର୍ଚ୍ଛନା ସୃଷ୍ଟି କରେ କ୍ଷୁଦ୍ରଗଳ୍ପ । ଉପନ୍ୟାସ ପରି ବର୍ଣ୍ଣନାର ଚମତ୍କାରିତାରେ ଏହା ବିଶ୍ୱାସ ନକରି ସ୍ୱଳ୍ପଭାଷୀ ବ୍ୟଞ୍ଜନାରେ, ଅନ୍ତହୀନ ଜିଜ୍ଞାସା ଓ ଅତୃପ୍ତ ପିପାସାରେ ଦୃଢ଼ ଆସ୍ଥା ସ୍ଥାପନ କରେ ।

ଉପନ୍ୟାସରେ ଜୀବନର ବିସ୍ତାର ଅଛି । ମାତ୍ର କ୍ଷୁଦ୍ର ଗଳ୍ପରେ ଛନ୍ଦର ନିକ୍ୱଣ ନଥାଇ ଜୀବନର ଗଭୀରତା ରହିଛି । ଏହାର କଳା-ଧର୍ମ କଥା ବିସ୍ତାରରେ ନାହିଁ, ଅଛି ସଙ୍କେତରେ । ନାଟକୀୟ ପ୍ରାରମ୍ଭ ଓ ପରିଣତି ନେଇ ଏକ ରସ ପରିଣାମମୁଖୀ ଓ ଆବେଗ ସହ କ୍ଷୁଦ୍ର-ଗଳ୍ପ ପ୍ରଜାପତିର ଲଘୁପକ୍ଷ ଓ ଭାରମୁକ୍ତ ଲଘୁଛନ୍ଦ ନେଇ ପାଠକ ମନରେ ଆସନ ପାତି ବସେ । ଏକ ନୂତନ ଦିଗ୍‌ଦର୍ଶନ ହୁଏ । ତେଣୁ କୁହାଯାଏ "ବିନ୍ଦୁବୃତ୍ତ କାହାଣୀ ଉପରେ ପରମାଶ୍ଚର୍ଯ୍ୟ ଜୀବନ ସମୁଦ୍ରର ରୂପମୟ ତରଙ୍ଗଲୀଳା" — କ୍ଷୁଦ୍ରଗଳ୍ପର କଥା ।

କ୍ଷୁଦ୍ରଗଳ୍ପରେ ବ୍ୟକ୍ତିର ମାନଦଣ୍ଡରେ ସମାଜର ବିଚାର କରାଯାଏ । କିନ୍ତୁ ଉପନ୍ୟାସରେ ସମାଜର ଦୃଷ୍ଟିରୁ ବ୍ୟକ୍ତିର ମୂଲ୍ୟାଙ୍କନ ହୁଏ । ତେଣୁ କ୍ଷୁଦ୍ରଶିଳ୍ପରେ ଥାଏ ଏକତ୍ୱରେ ବହୁର ସ୍ଥିତି । ମାତ୍ର ଉପନ୍ୟାସରେ ବହୁତ୍ୱରେ ଏକର ସ୍ଥିତି । କ୍ଷୁଦ୍ରଗଳ୍ପ ବ୍ୟକ୍ତିସର୍ବସ୍ୱ ହୋଇଥିବାରୁ ବ୍ୟକ୍ତିର ଆଶା, ଆକାଂକ୍ଷା, ମାନସିକ ଦ୍ୱନ୍ଦ୍ୱ, ମନୋବୈଜ୍ଞାନିକ ଚିନ୍ତାଧାରା, ବେଦନା, ସ୍ୱପ୍ନ, ଆଧ୍ୟାତ୍ମିକତା ପ୍ରଭୃତି ଜୀବନର ଜାଗ୍ରତ ଓ ଅବେଦ୍ୟ ଚିନ୍ତାର ଭାର ଏହା ବହନ କରେ ।

ସମାଜ ଓ ବ୍ୟକ୍ତିର ପରିପ୍ରେକ୍ଷୀରେ କ୍ଷୁଦ୍ରଗଳ୍ପ ଓ ଉପନ୍ୟାସର ତୁଳନାତ୍ମକ ବିଚାର କରିବାକୁ ଯାଇ ସମାଲୋଚକ ଲେଖିଛନ୍ତି:—
"ବ୍ୟକ୍ତିର ସଂଗ୍ରାମ ଆଧ୍ୟାତ୍ମିକ ଏବଂ ଏହାର ଗତି ଊର୍ଦ୍ଧ୍ୱକୁ । ସମାଜର ସଂଗ୍ରାମ ଆଧିଭୌତିକ ଏବଂ ପାର୍ଶ୍ୱକୁ ଏହାର ଗତି । ବ୍ୟକ୍ତି ଏକାଧାରରେ ଆଧ୍ୟାତ୍ମିକ ଓ ଆଧିଭୌତିକ, ଏକକ ଓ ସାମାଜିକ । କ୍ଷୁଦ୍ରଗଳ୍ପରେ ଥାଏ ବ୍ୟକ୍ତିର ସଂଗ୍ରାମ, ଉତ୍ଥାନ ଓ ପତନ । ଉପନ୍ୟାସରେ ଥାଏ ସମାଜର ସଂଗ୍ରାମ, ଉତ୍ଥାନ ବା ପତନ, କିନ୍ତୁ ଏହାର ଅର୍ଥ ନୁହେଁଯେ ଏ ଦୁଇଦିଗ ପରସ୍ପର ସମ୍ପର୍କବିହୀନ ବା ପରସ୍ପର ବିରୋଧୀ ।"*

ଯେତେବେଳେ ସମାଜ ଗୌଣ, ବ୍ୟକ୍ତି ମୁଖ୍ୟ ଓ ଆଧ୍ୟାତ୍ମିକ ସାଧନାରେ ରତ, ସମାଜର ଆଧିଭୌତିକ ପ୍ରଭାବ ତାକୁ ଗ୍ରାସ କରିପାରେ ନାହିଁ । ଅବଶ୍ୟ ପରସ୍ପର ଉପରେ ପ୍ରଭାବ ପକାଇବା ପାଇଁ ସମାଜ ଓ ବ୍ୟକ୍ତି ଉଭୟେ ବ୍ୟାକୁଳ ।

Peace is the dream of the soul, war in the reality of the body—Richard Burton— ଆତ୍ମାର ଆକର୍ଷଣ ଓ ବାହାର ଜୀବନର ଦ୍ୱନ୍ଦ୍ୱ । ଏହି ଦୁଇ ନାବରେ ପାଦ ପକାଇ ମାନବ ଅଗ୍ରସର ହୁଏ । ଆଧିଭୌତିକ ଜୀବନର ନିଷ୍କୃତି ଏଠାରେ ନାହିଁ, ଅଛି ସଂଗ୍ରାମଶୀଳ ପ୍ରାଣରେ ସିଦ୍ଧିର ବିଜୟସୂଚୀକା । ସହୃଦୟତା, ପ୍ରେମ, ସଂହତି ପ୍ରଭୃତି ସ୍ୱକୀୟ ଗୁଣାବଳି, ବ୍ୟକ୍ତିର ଆଧ୍ୟାତ୍ମିକ ଜୀବନର ସ୍ୱପ୍ନ, ଯୁଦ୍ଧ, ସ୍ୱାର୍ଥପରତା, ଦୈହିକ କ୍ଷୁଧା ପ୍ରଭୃତି ଆଧିଭୌତିକ ଜୀବନର ବାସ୍ତବତା । ଆମ ହୃଦୟର ଏହି ଦୁଇ

*ଝଙ୍କାର-୨୨ଶ ବର୍ଷ ୩ୟ ସଂଖ୍ୟା-ପୃ୨୫ (କ୍ଷୁଦ୍ରଗଳ୍ପର ମୂଲ୍ୟ-ବୋଧ-ବାମାଚରଣ ମିଶ୍ର)

ଅବସ୍ଥାର ମିଳନରେ ବ୍ୟକ୍ତି ସାମାଜିକ ଦିଗପ୍ରତି ଅଧିକ ଅବହିତ ରହିଲେ ବ୍ୟକ୍ତିର ନିରଜନା ସାହିତ୍ୟରେ କରାଯାଇ ପାରେନା । ଏହି ଜାତୀୟ ଆରାଧନା ପାଇଁ ଲେଖକକୁ ଆଦର୍ଶ ଦିଗ୍‌ବଳୟ ସନ୍ଧାନ କରିବାକୁ ପଡେନା; ତାର ଅନୁସନ୍ଧିତ୍ସୁ ଦୃଷ୍ଟି ଗୃହ୍ନି ରହେ ପାର୍ଥିବ ଜଞ୍ଜାଳଗ୍ରସ୍ତ ମାନବକୁ, ଅବାସ୍ତବ ସାଂସାରିକ ବନ୍ଧନରେ ପୀଡ଼ିତ ଆଧାତ୍ମିକ ଯନ୍ତ୍ରଣାରେ ଆର୍ତ୍ତନାଦ କରୁଥିବା ସେଇ କ୍ଷୁଦ୍ର ବ୍ୟକ୍ତିକୁ ଅବାସ୍ତବ ମୁକ୍ତିର ଦିଗ୍‌ବଳୟ ଆଡ଼େ ଯାହାର ଶେଷଦୃଷ୍ଟି ।

ଓଡ଼ିଆ ଗଳ୍ପ ସାହିତ୍ୟରେ ଏହି ବ୍ୟକ୍ତିର ବନ୍ଦନା କରିଛନ୍ତି ଗାଳ୍ପିକ ସୁରେନ୍ଦ୍ର ମହାନ୍ତି । ବିଂଶ ଶତାବ୍ଦୀର ଚତୁର୍ଥ ଦଶକରୁ ଲେଖନୀ ସୃଜନା କରି ସେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ବହୁ ସାର୍ଥକ କ୍ଷୁଦ୍ର ଗଳ୍ପରେ, ନୂତନ ଜିଜ୍ଞାସାସମ୍ପନ୍ନ ଉପନ୍ୟାସରେ, ଜୀବନୀ ସାହିତ୍ୟର ସରସତାରେ ଓ କାବ୍ୟଧର୍ମୀ ନୂତନ ଦୃଷ୍ଟିକୋଣ ପ୍ରସୂତ ସମାଲୋଚନା ସାହିତ୍ୟରେ । ତାଙ୍କର ଲେଖନୀ ଓଡ଼ିଆ ସାହିତ୍ୟରେ ଗୁଣାତ୍ମକ ଓ ପରିଣାତ୍ମକ ଅଭିବୃଦ୍ଧିରେ ନୂତନ ଦିଗନ୍ତ ସୃଷ୍ଟି କରିଛି— ଏହା ସର୍ବବାଦୀସତ । ଊନବିଂଶ ଶତାବ୍ଦୀର ଶେଷ ଦଶକରେ ଫକୀରମୋହନ ଗଳ୍ପର ଯେଉଁ ପ୍ରତିମା ପ୍ରସ୍ତୁତ କରିଥିଲେ ରେବତୀ ମାଧ୍ୟମରେ ବହୁ ଘାତ ପ୍ରତିଘାତ ମଧ୍ୟରେ ସମାଜର ଓ ବ୍ୟକ୍ତିର ମର୍ମିକ ଚିତ୍ର ବହନ କରି ସେଇ ମୃଣ୍ମୟ ମୂର୍ତ୍ତି ଆଜି ସୁରେନ୍ଦ୍ର ମହାନ୍ତିଙ୍କ ହସ୍ତରେ ସଗଠ କୋଣାର୍କରେ ପରିଣତ ହୋଇଛି, ଯାହାର ଗାତ୍ରରେ ବହୁ ରତିକ୍ଳାନ୍ତା, ପଥଭ୍ରଷ୍ଟା ଫ୍ରିଜିଡ଼ର ଚିତ୍ର, କେନ୍ଦ୍ରରେ ଆରାଧ୍ୟ ଅମଳିନ ବ୍ୟକ୍ତିତ୍ୱ ଓ ଚତୁଃପାର୍ଶ୍ୱରେ ପର୍ଶୁ-ଦେବତା ପରି ସମାଜର ମେଖଳା ଓ ଯଜମାନର ସ୍ୱାର୍ଥବାଦିତା । ଫକୀରମୋହନଙ୍କ ଦୁର୍ଦ୍ଦାନ୍ତ ଗଣ୍ଡିପୁଅ ଅନନ୍ତା, ରଣଚଣ୍ଡୀ ମହାକୁଡ଼ ସ୍ତ୍ରୀ ଯଶୋଦା ର କେବଳ ଏକୋଇର ବଳା ବସିକେଶନ ନୁହେଁ ।

ତାର ହୃଦୟରେ ସହୃଦୟତା ଓ ଗୋଷ୍ଠୀପାଇଁ ଜୀବନ-ଦେବାର ଯେଉଁ ଅନ୍ତଃସଲିଳା ଫଲ୍‌ଗୁ ପ୍ରବାହିତ ହୋଇଥିଲା ସୁରେନ୍ଦ୍ର ମହାନ୍ତିଙ୍କ ଲେଖାମାନେ ସେହି ଅନନ୍ୟା ଜନ୍ମନେଇଛି ନୂତନ ରୂପରେ ବରଜ୍‌ଷେଣ୍ଟ ନାମରେ । ହୀନ ରାଜନୈତିକ ଉଦ୍ଦେଶ୍ୟରେ ସମୂହ ସ୍ୱାର୍ଥକୁ ବ୍ୟକ୍ତିଗତ ଅଥବା ଦଳୀୟ ସ୍ୱାର୍ଥ ସାଧନରେ ଯେପରି ବ୍ୟବହାର କରାଯାଉଛି, ବରଜ୍‌ଷେଣ୍ଟ ଅଥବା ହରମାଷ୍ଟ୍ରଙ୍କର ଜୀବନର କରୁଣ ଆତ୍ମଲିପି ତା ପ୍ରତି ଏକ ପ୍ରଚଣ୍ଡ ଆଘାତ ଓ ବଜ୍ର୍ ପ୍ର ବ୍ୟଞ୍ଜିତ ଅନ୍ୟକିଛି ନୁହେଁ । ଦେହ ଓ ମନର ସ୍ଥୂଳଙ୍ଗରେ ଆତ୍ମଦାହ ଦେଇ ଏବଂ ସମାଜର ତଥାକଥିତ ଆକର୍ଷଣୀୟ ବସ୍ତୁର ଓ ମାନବର ସ୍ରୋତରେ ଲକ୍ଷ୍ୟ ପ୍ରଦାନ କରି ଜୀବନ ଆଶାରେ ଯେଉଁ ବ୍ୟକ୍ତିତ୍ୱ ବଂଶରଦ୍ଧେ ଗାଳ୍ପିକ ମହାନ୍ତି ତାହାର ଗ୍ରାଫିକ ଛବି ଦେବାର ଜଣେ ସାର୍ଥକ କଳାକାର । ଏ ସଂକ୍ରାନ୍ତରେ ସେ କହନ୍ତି— "ମୋର ସମସ୍ତ ଲେଖାର ପୃଷ୍ଠଭାଗ ଓ ପୃଷ୍ଠଭୂମିରେ ରହିଛି ଏହି ବ୍ୟକ୍ତି—ଯେ ଶୁଭ୍ର, ସୁନ୍ଦର, ମୁକ୍ତ ଅନନ୍ୟସାଧାରଣ ଓ ଅମଳିନ । ପରିସ୍ଥିତିର ପ୍ରଭାବ ତା'ର ବ୍ୟକ୍ତିତ୍ୱକୁ ମଳିନ କରିଦିଏ ।" * (୧) ଉତ୍କଳ ସାହିତ୍ୟରେ ୧୯୩୮ ମସିହାରେ ପ୍ରକାଶିତ ତାଙ୍କର ପ୍ରଥମ ଗଳ୍ପ 'ବନ୍ଦୀ' ଅଥବା ଗାଳ୍ପିକଙ୍କ ମତରେ ବାଧ୍ୟକଷ ଭାବେ ୧୯୪୦ ରେ ପ୍ରକାଶିତ ପ୍ରଥମ ଗଳ୍ପ 'ମଣିଷ ଓ ଅର୍ଥନୀତି' ଠାରୁ ଆରମ୍ଭ କରି ଅଜସ୍ରସ୍ରାବୀ ଲେଖାମାନ 'ଓ, 'କାଲକାଠା' ପର୍ଯ୍ୟନ୍ତ ଶ୍ରୀଯୁକ୍ତ ମହାନ୍ତି ବ୍ୟକ୍ତିର ବନ୍ଦନା ଜଣେ ଶ୍ରେଷ୍ଠ ମାନବବାଦୀ କଳାକାର ଭାବେ ହିଁ ଅଙ୍କନ କରିଛନ୍ତି । ଗଭୀର ଅନୁଭୂତି ଓ ଅନ୍ତର୍ଦୃଷ୍ଟିରୁ ତଥା ବେଦନାରୁ ଜନ୍ମ ନେଇଥିବା ତାଙ୍କର ଅଧିକାଂଶ ଗଳ୍ପ ବେଶ୍ ପ୍ରଭାବଶାଳୀ ଓ ଆବେଗ ପ୍ରଧାନ ।

*(୧)—'ଡଗର'—ମୁ କାହିଁକି ଲେଖେ—୧—୧୧—୧୯୬୦

କୌଣସି ଏକ ନିର୍ଦ୍ଦିଷ୍ଟବାଦ ବା ଆଦର୍ଶ ତାଙ୍କ ଗଳ୍ପର ପ୍ରାଣ ନୁହେଁ । ହେତୁବାଦ ତାର ଜନ୍ମପୀଠ । ତାଙ୍କ ଗଳ୍ପ ଗୁଡ଼ିକରେ କୌଣସି ସାମାଜିକ ସମସ୍ୟାଗୁଡ଼ିକର ସମାଧାନ ନାହିଁ । ବିଶ୍ୱ ସାହିତ୍ୟରେ ଆତ୍ମାନୁସନ୍ଧିତ୍ସୁ ସେଗୁଡ଼ିକ ସମସ୍ୟାମୂଳକ ହେଲେହେଁ ବ୍ୟକ୍ତିତ୍ୱର ଅମଳିନ ଶୁଭ୍ରତା ଓ ସ୍ୱଚ୍ଛତା ହିଁ ସେମାନଙ୍କର ଜ୍ୟୋତି । ସମାଜର ବୋଲର୍ ତାକୁ ନଷ୍ଟ୍ କରିପାରି ନାହିଁ । ଏ ସମ୍ବନ୍ଧରେ ଗାଳ୍ପିକ ମହାନ୍ତି କହନ୍ତି "ବିଶ୍ୱବ୍ୟାପୀ ସାହିତ୍ୟ ଆଜି ସମସ୍ୟାମୂଳକ । ଏ ସମସ୍ୟା ପୁଣି କେବଳ ଭାତ, ଲୁଗାର ଜାନ୍ତବ ସମସ୍ୟା ନୁହେଁ । ଜୀବନର ଆଧ୍ୟାତ୍ମିକ ଓ ଆବେଗଗତ ସମସ୍ୟାମଧ୍ୟ ଏହାର ଅନ୍ତର୍ଗତ । 'ରସ' ଏ ସାହିତ୍ୟର ପ୍ରାଣନୁହେଁ । ଆଇଡ଼ିଆ ବା ଚିନ୍ତା ଏ ସାହିତ୍ୟର ପ୍ରାଣ । ଏହି ଆଇଡ଼ିଆଧର୍ମୀ ସାହିତ୍ୟର ଭୂମିକା ମୁଁ ଓଡ଼ିଆ ସାହିତ୍ୟରେ ଯଥାର୍ଥ ଲେଖିଛି ବୋଲି ଦାବୀ କରେ ।"* (୨)

କେବଳ Instinct ବା ପ୍ରେରଣା ତାଙ୍କ ଗଳ୍ପର ଉତ୍ସ ନୁହେଁ । ଆବେଗ ଓ ହେତୁବାଦହିଁ ସୁରେନ୍ଦ୍ର ମହାନ୍ତିଙ୍କ ଗଳ୍ପର ଭିତ୍ତି ବୋଲି ସେ ନିଜେ ସ୍ୱୀକାର କରନ୍ତି । ନିଜ ଗଳ୍ପ ସମ୍ବନ୍ଧରେ ସମୀକ୍ଷା କରିବାକୁ ଯାଇ ଶ୍ରୀଯୁକ୍ତ ମହାନ୍ତି କହନ୍ତି— "× × ମୋର ଶ୍ରେଷ୍ଠ ଗଳ୍ପ ଗୁଡ଼ିକରେ ପ୍ରେମ, ପ୍ରଣୟ, ବିରହ, ପ୍ରତୀକ୍ଷା ଓ ଆକାଂକ୍ଷା ପ୍ରଭୃତିର କୌଣସିମତେ ଅଭାବ । ମୋର ଗଳ୍ପ ଗୁଡ଼ିକର ପ୍ରତ୍ୟେକଟି ଚରିତ୍ର ସେଇଥି ପାଇଁ ସିନିକ୍ । ରିଜନ୍ ବା ହେତୁବାଦର ଜନ୍ମ ସିନିସିଜିମ୍ ଠାରୁ । ଏ ସିନିସିଜିମ୍ ଅନେକଙ୍କ ମତରେ ଏକ ଅସୁସ୍ଥ ମସ୍ତିଷ୍କର ପରିଚୟ । କିନ୍ତୁ ମୋ ମତରେ ସିନିସିଜିମ୍ ନୂତନ

*(୨)—'ଉତ୍ତର' ମୁଁ କାର୍ତ୍ତିକ ଲେଖେ-ଉତ୍ତର—୧-୧୧-୧୯୫୦,

ମୂଲ୍ୟବୋଧ ଓ ନୂତନ ମାନଦଣ୍ଡର ପ୍ରସୂତିବେଦନା, ଏକ ଦୁଃସହ ଆଧ୍ୟାତ୍ମିକ ଯନ୍ତ୍ରଣା ।” ✻ (୧)

ମୋଟାମୋଟି ଭାବେ ଦେଖିଲେ ବ୍ୟକ୍ତିର ଆଧ୍ୟାତ୍ମିକ ଯନ୍ତ୍ରଣାକୁ ସେ ଜୈବିକ କ୍ଷୁଧା ଓ କାମନା ଦେଇ ଉତ୍ତୀର୍ଣ୍ଣ କରାଇଛନ୍ତି । ଦୁର୍ବିସହ ବେଦନାରେ ପ୍ରସୂତିର ଉତ୍କଣ୍ଠା ନେଇ ତାଙ୍କର ଗଳ୍ପ ସମୃଦ୍ଧ ଓଡ଼ିଆ ସାହିତ୍ୟକୁ ନୂତନ ଦିଗ୍‌ଦର୍ଶନ ଦେଇ ପାରିଛି । ଚେତନାର ପ୍ରବାହ ମଧ୍ୟରେ ଆତ୍ମା ସଦାସର୍ବଦା ପରମାତ୍ମାର ସନ୍ଧାନ ନଜର ଅଜ୍ଞାତରେ କଲ ପରି ତାଙ୍କର ଗଳ୍ପ ଗୁଡ଼ିକ ଚିନ୍ତା, ଆବେଗ, ଉତ୍କଣ୍ଠା ଓ ଆତ୍ମିକ ଭାବର ସନ୍ଧାନ କରନ୍ତି । ମାୟା ଓ ଦେହର ପରିଧି ମଧ୍ୟରେ ମୁକ୍ତି-କକ୍ଷଚ୍ୟୁତ ବୌଦ୍ଧ ଯୁଗୀୟ ଗଳ୍ପର ଚରିତ୍ର ଗୁଡ଼ିକ ସନ୍ନ୍ୟାସ ଅପେକ୍ଷା ବେଶୀ ସମାଜିକ ଓ ସାଂସାରିକ ହେବା ପାଇଁ ବ୍ୟାକୁଳିତ ହୋଇ ଉଠିଛନ୍ତି । ଫ୍ରଏଡଙ୍କ ଚିନ୍ତାଧାରାର ମନୋଜ୍ଞ ବିଶ୍ଳେଷଣ ତାଙ୍କ ସାହିତ୍ୟିକ ସଫଳତାର ଅନ୍ୟ ଏକ ଦିଗ । ତେଣୁ ଦେହର କ୍ଷୁଧାରେ ଆତ୍ମାର ଅଭୀପ୍ସା ମଳିନ ହୋଇଅଛି— ମହାନିର୍ବାଣରେ । ପ୍ରବୃତ୍ତିର ନବୀକରଣ ପାଇଁ ସାଧନା ଆବଶ୍ୟକ ଅନୁଭୂତି ମାଧ୍ୟମରେ— ସଙ୍କୋଚନରେ ବା ଅପର ଏକ ସ୍ୱର୍ଗର ପରିକଳ୍ପନାରେ ନୁହେଁ । କେବଳ ବିଂଶ ଶତାବ୍ଦୀର ମାନବ ନୁହେଁ, ପ୍ରଥମ ମାନବର ଜନ୍ମ ଜାତକଠାରୁ ଆଜି ପର୍ଯ୍ୟନ୍ତ ମଣିଷ ମନରେ କାମନାର ଯେଉଁ ଲେଲିହାନ ଶିଖା ପ୍ରଜ୍ୱଳିତ ଅଛି ତାହାକୁ ଗାଳ୍ପିକ ସଂଯତ ଭାଷାରେ ଓ ଭାବର ଗମ୍ଭୀରତାରେ ଲିପିବଦ୍ଧ କରିଛନ୍ତି ଏହିପରି—“ବିନିଦ୍ର ରାତିର ଅଗଣିତ ଜ୍ୱଳାମୟ ମୁହୂର୍ତ୍ତରେ, ବେଦନାର ନିଷ୍ଠୁର ଦଂଶନପରି, ମଧୁରିମାର ସ୍ମରଣରେ ସୁଦ୍ଧା, ଏକ ସୁତୀବ୍ର ବେଦନା ମାଳୋପୃଳଙ୍କର ସମଗ୍ର ସତ୍ତାକୁ କୁଣ୍ଠିତ କରିଦେଲା ।” ✻ (୨)

---

(୧) ✻— ମୁଁ କାହିଁକି ଲେଖେ— ଉତ୍ତର— ୧-୧୧-୧୯୫୦

ନିର୍ବାଣର ମହାଶୂନ୍ୟତା ମାନୋପୂତ ଉପଲବ୍ଧି କରିଛନ୍ତି ମଧୁବ୍ରତାର ପ୍ରାଣହୀନ ଉଲଙ୍ଗ ପିଣ୍ଡକୁ ଦୁଇବାହୁରେ ବକ୍ଷ ସଂଲଗ୍ନ କରି । ମଧୁ-ମତୀର ସର୍ବିରେ ମଧ୍ୟ ଉପଯୁକ୍ତ ସତ୍ତାର ଆଜ ଏକ ନିନାଦିତ ସ୍ୱର ଦେଖିବାକୁ ମିଳେ ।

ବୈଶ୍ୱର୍ଯ୍ୟ ସମନ୍ୱିତ ରୋମାଣ୍ଟିସିଜମ୍ ତାଙ୍କ ରଚିତ ବୌଦ୍ଧ-ଯୁଗୀୟ ଗଳ୍ପ ଗୁଡ଼ିକର ଜୀବନ ହେଲେ ହେଁ 'ମହାନଗରୀର ରାତି' 'ସବୁଜ ପତ୍ର ଓ ଧୂସର ଗୋଲାପ', 'କୃଷ୍ଣଚୂଡ଼ା', 'ମରାଳର ମୃତ୍ୟୁ', 'ପାଗଳା ଗାରଦର କାହାଣୀ' ପ୍ରଭୃତି ଗଳ୍ପ ଗୁଡ଼ିକରେ, ଅନ୍ତଃସାର ଶୂନ୍ୟ, ମାନସିକ ଭାରସାମ୍ୟହୀନ, ଆଧ୍ୟାତ୍ମିକ ଜଡ଼ତାଗ୍ରସ୍ତ ପ୍ରଗତି-ବାଦୀ ବ୍ୟକ୍ତି ଓ ତାହାର ବ୍ୟକ୍ତିତ୍ୱ ସମ୍ପନ୍ନ ଜୀବନର ଯେଉଁ ଶରଶଯ୍ୟା ସେ ରଚନା କରିଛନ୍ତି, ତାହାଁର ଅନ୍ତରାଳରେ ସମା-ଲୋଚକ ଗାଳ୍ପିକ ମହାନ୍ତିଙ୍କ ସାଧନା ଓ ସିଦ୍ଧିକୁ ବହୁର କରି ବିସ୍ମିତ ହୋଇଯାଏ । ପ୍ରାଣ ପ୍ରାଚୁର୍ଯ୍ୟରେ ଭରା ଉପରୋକ୍ତ ଗଳ୍ପ ଗୁଡ଼ିକର ଆଙ୍ଗିକ ଓ ଆତ୍ମିକ ଗଠନ କୌଶଳ ଏତେ ବଳିଷ୍ଠ ଯେ, ସେ ସବୁ ପାଠକର ଅନ୍ତସ୍ଥଳ ଭେଦ କରିବାକୁ କ୍ଷମ ହୁଏ । ନିଜ ଜୀବନର ଏକ ଫଟୋଗ୍ରାଫିକ୍ ଚିତ୍ର ସେମାନେ ଯେପରି ପାଠକ ନିକଟରେ ଉପସ୍ଥାପିତ କରନ୍ତି ।

କଥାକାର ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ କୃଷ୍ଣଚୂଡ଼ା ଗଳ୍ପରେ ସେ ଏବଂ ତାଙ୍କର ପ୍ରିୟ ପାଠକ ଏକାତ୍ମ ହୋଇଥାନ୍ତି । ତଥାପି ତାଙ୍କର 'ମରାଳର ମୃତ୍ୟୁ', ସବୁଜ ପତ୍ର ଓ ଧୂସର ଗୋଲାପ', 'ନିଃସଙ୍ଗ ଆକାଶ' ପାଠକର ଅତି ପ୍ରିୟ । ଏହା ପଛରେ ବଳିଷ୍ଠ

---

୨) *— ମହାନିର୍ବାଣ— ପୃ ୫

ଯୁକ୍ତିର ଅଭାବ ନାହିଁ । ମନେହୁଏ ଆଧୁନିକ ନିଃସଙ୍ଗ ଜୀବନର ଏମାନେ ଯୁଗୋପଯୋଗୀ ଛବି ବହନ କରନ୍ତି । ବିକାର ଗ୍ରସ୍ତ ମନର ଚେତନାକୁ ଆହତ କରନ୍ତି । 'ମଗଜର ମୃତ୍ୟୁ' ଶୀର୍ଷକ ଗଳ୍ପରେ କଥାକାର ଜୀବନର ଜାନ୍ତବ କ୍ଷୁଧା ବ୍ୟତିରେକ ସାଂସ୍କୃତିକ ପୃଷ୍ଠଭୂମି ଉପରେ ଆଧ୍ୟାତ୍ମିକ ଜୀବନର ଏକ ଅନାହତ ସ୍ୱର ସନ୍ଧାନ ଗଣ-ଜୀବନରେ କରିଛନ୍ତି । ବିଶ୍ୱାସର ନଦୀ ଗର୍ଭ ସନ୍ଦେହର ବାଲିଚରରେ ପୋତି ହୋଇ ପଡ଼ିଛି । ମାଳକଳ୍ପ ତଳୁ ସିଦ୍ଧ ନିରଞ୍ଜନଙ୍କ ଖଞ୍ଜଣୀ ବାହାରିବାର ପ୍ରତୀକ୍ଷା କରି କରି, ତାହା ପ୍ରାୟ ସମସ୍ତେ ଭୁଲି ଯାଇ-ଅଛନ୍ତି । କିନ୍ତୁ ଜ: ବ: ଆର୍ ରେଳପଥର ନିର୍ମାଣ ପଥରେ ଅନ୍ତରାୟ ସୃଷ୍ଟି କରୁଥିବା ଦାଢ଼ୀ ଜଟକଟା ସ୍ୱୟଂ ସିଦ୍ଧ ନିରଞ୍ଜନଙ୍କ ପ୍ରତ୍ୟୟ ଆଣି ଦେଉଥିବା ଷାଠିଏ ଫୁଟ ଗୋଲେଇ ବିଶିଷ୍ଟ ବିରାଟାକାର ପୁରାଣ ବୃଦ୍ଧ ମାଳକଳ୍ପବଟ ଯେତେବେଳେ ପ୍ରକାଣ୍ଡକାୟ ବୁଲଡୋଜର୍‌ର ମାନଙ୍କର ଆଘାତ ଓ ଆକ୍ରମଣରେ ନିହତ ହେଲା, ସେତେବେଳେ ବଟତଳୁ ବାହାରି ଥିଲା ବାବା ନିରଞ୍ଜନ ଦାସଙ୍କ ବହୁ ଦିନର ପ୍ରତ୍ୟାଶିତ ଖଞ୍ଜଣୀ । ପୁରାତନ ଐତିହ୍ୟ ଓ ବିଶ୍ୱାସର ସ୍ୱାକ୍ଷର ବହନ କରି ସିଦ୍ଧ ନିରଞ୍ଜନଙ୍କ ହସ୍ତଚ୍ୟୁତ ଖଞ୍ଜଣୀ ଗଣଜୀବନରେ ଏକ ଅଭୂତପୂର୍ବ ଚମକ ସୃଷ୍ଟି କଲା ଓ ଅଲୌକିକତାରେ ଅଭିଭୂତ କରିଦେଲା । ଗାଳ୍ପିକଙ୍କ ଭାଷାରେ "ପରେ ମଦ ଓ ରେଜାମାନଙ୍କର ଦେହ ପାଇଁ ଶ୍ୱାନ ଯୁଦ୍ଧ ଭୁଲି, ଗଣଭକ୍ତିର ଏକ ଅଭୂତପୂର୍ବ ବନ୍ୟାରେ, ଜାଠିକୁଟା ପରି ଭାସିଯାଇଁ କଳ୍ପବଟ ମୂଳେ ରୁଣ୍ଡ ହୋଇଅଛନ୍ତି"— ଅଗଣିତ ଜନତା । ପରେ ଆଧୁନିକ ପ୍ରାଣ ପ୍ରବାହକୁ ଅବଜ୍ଞା କରି ଶହ ଶହ ଖଞ୍ଜଣୀର ଗୁରୁଗମ୍ଭୀର ଟିପା ସହିତ ସେମାନଙ୍କ ଲହରିଆ କଣ୍ଠରେ ଶୁଭୁଥିଲା ସିଦ୍ଧ ନିରଞ୍ଜନଙ୍କ ରଚିତ ଜନପ୍ରିୟ ଭଜନ—

"ନୀଳ କଳ୍ପବଟ ମୂଳେ........
ନିତ୍ୟଖେଳେ ହଂସ ଯମୁନା ଜଳେ ଲୋ
ଲେଉଟି ହଂସ ପିଉଛି ପାଣି
ଲାଞ୍ଜରେ ଅଣ୍ଡ ଦେଇଛି ହାଣିଲୋ"

କିନ୍ତୁ ଭଗବତ୍ ବିଶ୍ୱାସୀ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ନୀରବ ସମର୍ଥକ ଓ ଜଗନ୍ନାଥଧର୍ମର ସାଧକ ନିରଞ୍ଜନଙ୍କର ମହତ୍‌ବାଣୀର ସାଉକଣ୍ଠ ଉପଲବ୍ଧି କରିବାକୁ ବର୍ତ୍ତମାନର ପଲ୍ଲବଗ୍ରାହୀ ଶିକ୍ଷିତ ସମାଜ ଆଗ୍ରହୀ ନୁହେଁ । ବରଂ ସେ ବିଦ୍ରୂପ କରେ ଆମେରିକାରୁ ସଦ୍ୟ ପ୍ରତ୍ୟାଗତ ଇଞ୍ଜିନିୟର ସୁବୋଧଚନ୍ଦ୍ରଙ୍କ କଣ୍ଠରେ ଏହିପରି— "ଏ ଜନତା ଆଜ ତଥାପି ସେହି ଯୁଗରେ ବଞ୍ଚିଛି, ଯେଉଁ ଯୁଗରେ ହଂସଥିଲା ସବୁଠାରୁ ଦ୍ରୁତଗାମୀ । ଗତିର ପଥକୁ ରୁଦ୍ଧ କରିବାପାଇଁ ଏ ସେହି ପଶ୍ଚାଦ୍‌ଗତିର ସଙ୍ଗୀତ ।"

ଓଡ଼ିଶାର ବୀର ବଳପୁର ହେ ଅଶୁଭ ମୁହୂର୍ତ୍ତ । ଧର୍ମନାମରେ ସାଧକମାନଙ୍କ ଉପରେ ସହସା ବଜ୍ରପାତ ହେଲା । ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ଅସାରତା ପ୍ରତିପାଦନ କରି ତାହାର ସ୍ଥାନ ଅଧିକାର କଲା ସହଜିଆ ବୈଷ୍ଣବ ଧର୍ମ ତତ୍ତ୍ୱ । ନିଜକୁ ରାଧାଭାବେ ପ୍ରତିଷ୍ଠାପିତ କରି କୃଷ୍ଣ ଆରାଧନାର ପ୍ରଚ୍ଛନ୍ନରେ ଯେଉଁ ଦୈହିକ କ୍ଷୁଧାର ଲାଳସା ଜାଗ୍ରତହେଲା ତାହାକୁ ଯେଉଁମାନେ ସମର୍ଥନ କରି ନ ପାରିଲେ ସେମାନଙ୍କୁ ନିରଞ୍ଜନଙ୍କ ପରି ଅନ୍ତର୍ଦ୍ଧାନ ହେବାକୁ ପଡ଼ିଲା । ଆଭିଜାତ୍ୟ ଓ ପ୍ରଭୁତ୍ୱର ପଥଚଳେ ସିଦ୍ଧ ନିରଞ୍ଜନଙ୍କ ପରି ବହୁ ସାଧକ ଦୁର୍ବାଦାସ ପରି ଧକାପଡ଼ିଗଲେ ଓ ନିଶ୍ଚିହ୍ନ ମଧ୍ୟ ହେଲେ । ମାତ୍ର ପ୍ରାଚୀନ ବିଶ୍ୱାସ ସରଳତାକୁ ନେଇ ଦ୍ୱନ୍ଦ୍ୱହୀନ ଓ ସଂଘର୍ଷହୀନ ଜୀବନ ଯେପରି ହଂସ ମାଧ୍ୟମରେ ପୁଣି ଜୀବନ୍ୟାସ

ପାଇଲା । ମାଷ ବାର୍‌ବଟୁରେଟ୍‌ ଗିଳି ଶୋଇ ଯାଇଥିବା ତରୁଣ ଇଞ୍ଜିନିୟର ସୁବୋଧର ଅବଚେତନ ମନରେ ପୁଣି ହଂସ ଆତ୍ମପ୍ରକାଶ କରି ଯୁଗ ଯନ୍ତ୍ରଣାର ସତ୍ୟକୁ ଉଦ୍‌ଘାଟନ କରିଛି । ଗାଳ୍ପିକ ଶୃଙ୍ଖଳିତ ମାଧ୍ୟମରେ ଯେଉଁ ପରିବେଶ ସୃଷ୍ଟି କରିଥିଲେ, ସୁବୋଧର ନିଦ୍ରିତ ଅବସ୍ଥାର ଅବ୍ୟକ୍ତ ଯନ୍ତ୍ରଣାକୁ ତାହାର ପରିପୂରକ । ଷଟ୍‌ନିକ୍‌ ଶିଳ୍ପି ଚେହେରାର ଇଞ୍ଜିନିୟର ବିକାଶ ଯୁଗର ଅବରୁଦ୍ଧ ଆର୍ତ୍ତନାଦ ଯଥାର୍ଥରେ ପ୍ରକାଶ କରିଅଛି । ବିକାଶର ଭାଷାରେ "ତୁମେମାନେ ମିସ୍ତ୍ରୀ, ମେସିନ୍‌ର କବ୍‌ଜା ଗଢ଼ିପାର, କିନ୍ତୁ ମଣିଷ ଆତ୍ମାର କଥା ତୁମେମାନେ ବୁଝିବ କୁଆଡୁ ?" ସମ୍ମିଳିତ କଣ୍ଠର ପ୍ରଚଣ୍ଡ ଅଟ୍ଟହାସରେ ବିକାଶର ମସ୍ତିଷ୍କର ସ୍ଥିରତା ସମ୍ବନ୍ଧରେ ସନ୍ଦେହ ଜାତ ହୋଇଥିଲେହେଁ ରାତ୍ରିର ନିର୍ଜନ ମୁହୂର୍ତ୍ତରେ ସୁବୋଧର ଜୀବନ କେବଳ ସଂଶୟାଛନ୍ନ ବାସ୍ତବତା ଓ ଅବଲମ୍ବନହୀନ ଓ ବିଶୃଙ୍ଖଳତାବିହୀନ ଜୀବନର ହିଁ ଇଙ୍ଗିତ ଦେଉଛି । ଉଜ୍ଜ୍ୱଳ ସଂସ୍କୃତି ଓ ଯୋଗଭକ୍ତିର ବେଳାଭୂମିର ଅନନ୍ତ ଦୂରରେ ଯେଉଁ ହଂସ ସନ୍ତରଣ କରୁଥିଲା ଗାଳ୍ପିକ ତାହାକୁ କେନ୍ଦ୍ରକରି ବର୍ତ୍ତମାନ ଜୀବନର ସ୍ୱରୂପ ଦର୍ଶାଇଛନ୍ତି । 'ମରାଳର ମୃତ୍ୟୁ' ଗଳ୍ପଟି ପ୍ରାଜ୍ଞ ସମାଲୋଚକ ଯଥାର୍ଥରେ କହିଛନ୍ତି" ଅଳ୍ପରେ କହିଲେ ପୁରାତନର ନିରାହ ଆତ୍ମପ୍ରତ୍ୟୟ ଓ ନୂତନର ସ୍ଥିତିଶୂନ୍ୟ ବାସ୍ତବତା ଭିତରେ ଲାଗିରହିଥିବା ମାନସିକ ସଂଘର୍ଷର ଚିତ୍ରରେ ଗଳ୍ପଟି ପ୍ରାଣବନ୍ତ ହୋଇ ଉଠିଛି ।" ✻ ୧

---

✻ ୧—ମରାଳର ମୃତ୍ୟୁ ଓ ଗାଳ୍ପିକ ସୁରେନ୍ଦ୍ର—ପୀତାମ୍ବର ପ୍ରଧାନ (ସମସାମୟିକ ଗଳ୍ପସଂକଳନ) ।

ପରିବେଶ ଓ କଥାବସ୍ତୁର ଦୀର୍ଘବର୍ଣ୍ଣନା ଗଳ୍ପକୁ ଇଙ୍ଗିତଧର୍ମୀ ନକରି ଅଧିକ ବର୍ଣ୍ଣନାତ୍ମକ କରିଛି । ଗଳ୍ପିକ ବହୁ ସ୍ଥାନରେ ଧର୍ମ ସମ୍ବନ୍ଧରେ ସ୍ୱମତ ଦେବାକୁ ଆଗଭର ହୋଇ ଆସିବା ଫଳରେ ସମାଲୋଚକର ସ୍ଥାନକୁ ଓହ୍ଲାଇ ଆସିଛନ୍ତି । ପରିବେଶ ସୃଷ୍ଟିରେ ଗଳ୍ପିକ ଏକ ଉନ୍ନତ ପରଂପରା ଓଡ଼ିଆ ଗଳ୍ପ କ୍ଷେତ୍ରରେ ସୃଷ୍ଟି କରୁଥିଲେହେଁ ଦୀର୍ଘ ବର୍ଣ୍ଣନା ଫଳରେ ପାଠକ—ସଚେତନ ଓ ସମସ୍ତ ସଚେତନ ଥିବାପରି ମନେହୁଏ ନାହିଁ; ଅବଶ୍ୟ ବୌଦ୍ଧିକ ଚିନ୍ତାର ଏହା ନିଶ୍ଚିତ ସ୍ୱାକ୍ଷର ।

ଆଧୁନିକ ସଭ୍ୟତା ଓ ସ୍ୱଚ୍ଛନ୍ଦତାବହ୍ନିନ ଜୀବନରମୁଖା ଖୋଲି ଦେବାକୁ ସୁରେନ୍ଦ୍ର ମହାନ୍ତି ଚିହ୍ନାନ୍ତି । ବିଂଶ ଶତାବ୍ଦୀର ମଣିଷମନର ଅବ୍ୟକ୍ତ ଯନ୍ତ୍ରଣା ସେ ଉପଲବ୍ଧି କରିଛନ୍ତି । ତେଣୁ ପାଗଳା ଗାରଦର କାହାଣୀ ଗଳ୍ପରେ ସେ କହିଛନ୍ତି "ଏ ଶତାବ୍ଦୀର ମଣିଷ ଧିରେ ଧିରେ ଯେପରି ପାଗଳ ହୋଇ ଆସୁଅଛି, ତାର ଇସ୍ତାହାର ପ୍ରକାଶ ପାଇଅଛି, ଆଧୁନିକ ଚିତ୍ରକଳାରେ, କବିତାରେ, ସଙ୍ଗୀତରେ ନୃତ୍ୟରେ, ରାଜନୀତିରେ, ବଞ୍ଚିବାରେ * ୨ ତେଣୁ ତାଙ୍କର ସନାତନ ପ୍ରକୃତିସ୍ଥ ହେଲେହେଁ ତାକୁ ଜନତା ଏପରିକି; ତାହାର ଆତ୍ମୀୟମାନେ ମଧ୍ୟ ପାଗଳ ବୋଲି ଧରି ନେଇଛନ୍ତି । ଗୃହକର୍ତ୍ତାରୁ ଅବସର ନେଇ ସନାତନ ବଞ୍ଚିବାର ନୂତନ ସ୍ୱାଦ ଆସ୍ୱାଦନ କରିଛି ନିଜେ, ଯାହା ଅପରମାନେ ପାଇ ପାରି ନାହାଁନ୍ତି । ରାଜନୀତି ନାମରେ ଅପରକୁ ନିନ୍ଦିତ ଓ ଦଳିତ କରିବାର ଯେଉଁ ବୁଭୁକ୍ଷା ଜାଗ୍ରତ ହୋଇଛି ସ୍ୱାଧୀନତା ପରବର୍ତ୍ତୀ ଭାରତରେ ତାହା 'ଗୃହଦାହ' ଗଳ୍ପର ଆତ୍ମ ବିଶେଷ ।

* ୨—ପାଗଳା ଗାରଦର କାହାଣୀ—ପୃ୧୪—୧୫—ଫେବୃୟାରୀ ୭୧—ପୃ—୮

ରଥୀପୁର ଆଶ୍ରମର ପ୍ରତିଷ୍ଠାତା ବିଶିଷ୍ଟ ସମାଜସେବୀ ଓ ତ୍ୟାଗୀ ଆନନ୍ଦ ବ୍ରହ୍ମଚାରୀ, "ଆଶ୍ରମର ଯୁଗ ଗଲା, ଏଥର ଆସିଲା ପ୍ରାସାଦର ଯୁଗ । ପୁଣି ବେଳ ଆସିଲେ ନୂଆଲୋକେ ଆସିବେ, ନୂଆ ଆଶ୍ରମ ଗଢ଼ିବେ ।" ଏତିକି କହି ବାହାରି ଯାଇଛନ୍ତି ନଜର ଭିଟାମାଟିକୁ ଛାଡ଼ି । କ୍ଷମତାର ମୋହ ନାମରେ ଅଧୁନାତନ ଯେଉଁ ରାଜନୀତି ଦଳୀୟ ଓ ବ୍ୟକ୍ତିଗତ ସ୍ୱାର୍ଥରେ ପରିଣତ ହୋଇଛି ତାକୁହିଁ ଗାଳ୍ପିକ କଟାକ୍ଷପାତ କରିଛନ୍ତି । ସାଧାରଣତନ୍ତ୍ର ଦିବସର ମଙ୍ଗଳ ପ୍ରଭାତରେ ସୁସଜ୍ଜିତ ଆନନ୍ଦାଶ୍ରମ ଏକ ଭଗ୍ନସ୍ତୂପରେ ପରିଣତ ହୋଇଛି ।

ଜୀବନର ରୁଦ୍ର ବୈଶାଖୀ ଝଡ଼ରେ ଦୁଇଟି ଶୁଖିଲା ପତ୍ରପରି ଗୋପନୀୟତା ଅନ୍ତରାଳରେ ପୁରୁଷ ଓ ନାରୀ ପ୍ରେମ କରିଛନ୍ତି 'ନୀଳଜ୍ୟୋତ୍ସ୍ନା' ଗଳ୍ପରେ ସମ୍ପୂର୍ଣ୍ଣ ଆନ୍ତରିକତା ଓ ଆବେଗ ସହିତ । ବ୍ୟର୍ଥତାର ଚଉମୁହାଣି ଛକରେ ଦିଗ୍‌ଭ୍ରାନ୍ତ ଓ ନିରୁଦ୍ଦିଷ୍ଟ ପୁରୁଷ ନିକଟରେ ସବୁ ପଥ ସମାନ । ସବୁଠି ଛାୟା ଓ ଆଲୋକର ଅକୁଣ୍ଠିତ ଅଚିହ୍ନା ଆଲିଙ୍ଗନ ସେ ଅନୁଭବ କରିଛି । ଅପର ପକ୍ଷରେ ବିବାହିତା ନାରୀ ରାତିର ଅଭିସାରିକା ସାଜିଛି, ଅବଶ୍ୟ ଦେହକୁ ବାଦ୍ ଦେଇ ପ୍ରେମ ପରୀକ୍ଷା ସେ କରିଛି । ଆଧୁନିକ ନିଃସଙ୍ଗ ଜୀବନର ବ୍ୟବଚ୍ଛେଦ ରୂପ ଦେଖାଇବାକୁ ଯାଇ ଗାଳ୍ପିକ ନାରୀ କଣ୍ଠରେ କହିଛନ୍ତି "ବିବାହର ସୃଷ୍ଟି ହୋଇଥିଲା ସନ୍ତାନ ଜନ୍ମ ଓ ବଂଶ ରକ୍ଷା ପାଇଁ । ବିବାହରେ ତେଣୁ କେବଳ ଦେହର ସମ୍ପର୍କ । ସ୍ୱାମୀକୁ ଭଲ ପାଏ କି ନାହିଁ ଅପେକ୍ଷା ସ୍ୱାମୀ ଭଲ ଲାଗନ୍ତି କି ନାହିଁ ପଚାରିଲେ ଅଧିକ ଯୁକ୍ତି ସଂଗତ ହୁଅନ୍ତା ।" କାରଣ ଏଯୁଗ ହେଉଛି ଆତ୍ମରକ୍ଷାର ଯୁଗ, ବଂଶ ରକ୍ଷାର ନୁହେଁ । ଜନ୍ମନିରୋଧ ଯୁଗରେ ପୁରୁଷ ଓ ନାରୀର ବୈବାହିକ ବିଶ୍ୱସ୍ତତା ସାମାଜିକ ଭିତ୍ତି ହୋହଲି ଯାଇଛି । ବିବାହ ପରି ଏକ ଉଦ୍ଦେଶ୍ୟବିହୀନ ଦାମ୍ପତ୍ୟରେ କବଳିତ ନାରୀ

ସୁ ମନର ଅବରୁଦ୍ଧ ବାତାୟନ ମୁକ୍ତ କରି ବସନ୍ତର ମଳୟ ସ୍ପର୍ଶ ଆକାଂକ୍ଷାରେ ତେଣୁ କହିଛନ୍ତି ବଦାହରେ "ମାତୃତ୍ୱର କ୍ଷୁଧା ମୋର ଶାନ୍ତ ହୋଇ ପାରିଥାଏ; ମାତ୍ର ମନ ମୋର ତୃଷାର୍ତ୍ତ, ମୋର ନାରୀତ୍ୱ କ୍ଷୁଧାର୍ତ୍ତ। ଏହି କ୍ଷୁଧିତ ନାରୀତ୍ୱ ନେଇ ଅବ୍ୟକ୍ତ ଯନ୍ତ୍ରଣାରେ ନାରୀ ପହଞ୍ଚେ ପ୍ରଶିକ୍ଷିତ ପୁରୁଷ ନିକଟରେ। ପାର୍କର କେଉଁ ନିର୍ଜନ ଶ୍ୟାମଳ ତୃଣ ଶଯ୍ୟାକୁ ଆଲିଙ୍ଗନ କରେ। ସମାଜର ଅନୁଶାସନକୁ ଭୁଲି ନାରୀର ଏ ପ୍ରକାର ଯାତ୍ରା ପାର୍କର ଅନ୍ୟ ସହଯାତ୍ରୀଙ୍କ ସମର୍ଥନ ପାଇ ପାରିନାହିଁ। ଫଳରେ ଏକ ଅବସନ୍ନ ରାତିର ନିଃସଙ୍ଗ ବେଳାରେ ଦେହକୁ ବାଦ୍‌ଦେଇ ପ୍ରେମ ସମ୍ଭବ କି ନୁହେଁ, ଦୁହେଁ ପରୀକ୍ଷା କରି-ବାର ଶପଥ ନେଇ ପରସ୍ପରଠାରୁ ଆଖି ଫେରେଇଛନ୍ତି। ଅବ୍ୟକ୍ତ ଅସମାପ୍ତ ମିଳନ-ଇଚ୍ଛାର ପରିସମାପ୍ତି ବେଶ୍ ନାଟକୀୟ ହୋଇ ପାରିଅଛି। ଚେତନାଧର୍ମୀ ସାହିତ୍ୟ (Stream of consciousness) ଓ ମନସ୍ତତ୍ତ୍ୱ ସମ୍ବଳିତ ଫ୍ରଏଡ଼ୀୟ ଚିନ୍ତାଧାରାର ମଧୁର ସମନ୍ୱୟ ତାଙ୍କ ଗଳ୍ପରେ କେତେକ ସ୍ଥାନରେ ପରିଦୃଷ୍ଟ ହୁଏ। କୌଣସି ଶୁଷ୍କ ଆଦର୍ଶବାଦର ମହିମା ଗାନ କରିବା ସପକ୍ଷରେ ଆଲୋଚ୍ୟ ଗାଳ୍ପିକ ନୁହଁନ୍ତି। ନାଟକ ସୁଲଭ ଭାଷା ମାଧ୍ୟମରେ ସେ ପରିପୂର୍ଣ୍ଣ ମଣିଷର ବନ୍ଦନା କରିଛନ୍ତି। ତେଣୁ ସେ କହନ୍ତି "ମନୁଷ୍ୟ ସବୁ ଆଦିମ ପ୍ରବୃତ୍ତି ଓ କାମନାକୁ ଆଦର୍ଶବାଦର ପ୍ରଚ୍ଛଦପଟରେ ଢ଼ାଙ୍କିଲା ପରି, ଜାନ୍ତବ ଯୌନ-ଆକର୍ଷଣ ଓ ଆକାଂକ୍ଷାକୁ ପ୍ରେମର ଆଭିଜାତ୍ୟ ମହତ୍ତ୍ୱ ଦେଇ ସମ୍ମାନାସ୍ପଦ କରାଇଅଛି। ଦେହର ଭୁଲ କ୍ଷୁଧା ପ୍ରେମ ନୁହେଁ, ଦେହ ଦେହାଶ୍ରିତ ନହେଲେ, କାମନା କାମନାଶ୍ରିତ ନହେଲେ, ପ୍ରେମର ପରିଚୟ ମିଳେ ନାହିଁ। ବିଶୃଙ୍ଖଳ ପରେ ପ୍ରେମ ଏକ ପ୍ରଚଣ୍ଡ ପ୍ରବଞ୍ଚନା।" * (୧)

---

* ୧ ନୀଳଜ୍ୟୋତ୍ସ୍ନା—ପୃ ୪୯

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଲେଖକର ମନୋରାଜ୍ୟରେ ଗୁରୁତର ପରିବର୍ତ୍ତନର ସୂତ୍ରପାତ ହେଲା । ସମାଜ ଓ ସମସ୍ୟା ସଚେତନ ଲେଖକ ନିଜର କୃତିରେ ଶ୍ରଦ୍ଧା କଲା ମଣିଷକୁ ତାହାର ସମସ୍ତ ତ୍ରୁଟି ବିଚ୍ୟୁତି ସତ୍ତ୍ୱେ । ତଥାପି ପରକୁ ଅପମାନିତ କରିବା ଓ ସଭ୍ୟତା ନାମରେ ଧ୍ୱଂସର ଯେଉଁ କରୁଣ ତାଣ୍ଡବଲୀଳା ସୃଷ୍ଟି ହେଲା ତାହାର ମଧ୍ୟ ସେ ପରିଚୟ ଦେଲା ନିଜର ସୀମିତ କୃତିର ପରିସରରେ । ବର୍ତ୍ତମାନ ଜୀବନର ବିରୁଦ୍ଧରେ ଷ୍ଟ ଯାହା ସମ୍ବନ୍ଧରେ ଟିପ୍ପଣୀ ଦେବାକୁ ଯାଇ ଗାଲ୍ପିକ ମହାନ୍ତି କହିଛନ୍ତି–"ଏମାନେ ସଂସଦ୍ରେ ଆଣବିକ ଅସ୍ତ୍ରସଜା, ଆନ୍ତର୍ଜାତିକ ନରହତ୍ୟା, ଦୁର୍ବଳର ପୀଡ଼ନ, ଶୋଷଣ, ଲୁଣ୍ଠନ ଓ ଅପମାନ ପ୍ରଭୃତି ବଡ଼ ବଡ଼ ପାପକୁ ଶ୍ରଦ୍ଧା କରନ୍ତି, ତେଣୁ ଜଣେ ବିବାହିତା ନାରୀ ଓ ଏକ ଅବିବାହିତ ଯୁବକ ମଧ୍ୟରେ ଶ୍ରଦ୍ଧାନ୍ୱିତ ସମ୍ପର୍କ ପରି କ୍ଷୁଦ୍ର ପାପକୁ ଘୃଣା କରିବା ଏମାନଙ୍କ ପକ୍ଷରେ ସ୍ୱାଭାବିକ—ଟଣ୍ଟିକଟ । ଓ଼କାପ୍ଲତ ଉଦରଜ୍ୱାଳାଗ୍ରସ୍ତ ଭିକ-ମ୍ରେରିକୁ ଘୃଣା କଲାପରି ।" * ୨

ଏବେ ସୌଜନ୍ୟ ନାମରେ ଆମେ ଅପରକୁ ସମ୍ମାନ ଦେଖାଉଁ, ମାତ୍ର ପରମୁହୂର୍ତ୍ତରେ ତାହାର ନିନ୍ଦା କରିବାରେ ଆମର କୁଣ୍ଠା ନାହିଁ । ଜୀବନଲେଖା ଆଜିର ମନୁସନ୍ତାନ ଜୀବନ ନାମରେ ମୃତ୍ୟୁରଫାଳକୁ ଧରିବାର ଦାରୁଣ ଚେଷ୍ଟାରୁ ବିରତ ନୁହେଁ । ସୁବୋଧ, ହରି ମାଷ୍ଟର, ଅଗାଧୁରଥ, ସନାତନ, ନୀଳଜ୍ୟୋସ୍ନାର ନାୟକ, ନାୟିକା ପ୍ରଭୃତି ପାତ୍ରପାତ୍ରୀ ଗଣ ଆଧୁନିକ ଜୀବନର ଏକ ଏକ ଚିତ୍ରଲିପି । ଉଦ୍ଦେଶ୍ୟ ଓ ଯାହାର ପଥ ନ ଜାଣି ଚାଲୁଥିବା ଲଗାମହୀନ ମଣିଷ, ଆଧୁନିକତା ନାମରେ ବ୍ୟକ୍ତିକୁ ଶ୍ରଦ୍ଧାକରି ଶିଖୁ, ଏହାହିଁ ଅପରିଚିତର ପରିଚୟ,

* ୨ ନୀଳଜୋସ୍ନା ପୃ ୪୬

ପାଗଳା ଗାଉଦର କାହାଣୀ, ମଗ୍ନଲର ମୃତ୍ୟୁ, 'ବରକନ୍ଦାଜ୍ ଷେଣ୍ଢ ଘାଇ' ପ୍ରଭୃତି ବହୁ ଗଳ୍ପର ପ୍ରାଣ କେନ୍ଦ୍ର । ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କ ଉପସ୍ଥାପନ ଭଙ୍ଗୀ, ଭାଷାର ସଂଯମତା ଓ ଆଭିଜାତ୍ୟ, ଚରିତ୍ରର ନାଟକୀୟତା ଓ ଆବେଗ ପ୍ରବଣତା ତାଙ୍କୁ ଓଡ଼ିଆ ଗଳ୍ପ ସାହିତ୍ୟରେ ଜଣେ ଅପରାଜେୟ ଗାଳ୍ପିକ ରୂପେ ସମ୍ମାନିତ କରିଛି—ଏଥିରେ ଦ୍ୱିମତ ହେବାର ନାହିଁ । ଶିଳ୍ପଭିତ୍ତିକ ସଭ୍ୟତା ଅପେକ୍ଷା ତାଙ୍କ ଲେଖାମାନରେ ପ୍ରକୃତିର ବନ୍ଦନା ଅଧିକ ହୃଦୟସ୍ପର୍ଶୀ, ମନେହୁଏ ପଲ୍ଲୀର ସ୍ନେହମୟ ସ୍ପର୍ଶପାଇଁ ସେ ବ୍ୟାକୁଳ । ବର୍ଣ୍ଣନାରେ କବିତ୍ୱମଧ ବେଶ୍ ମନୋରମ । ଯଥା :—"ଆଶ୍ୱିନର ଗୋଟିଏ ମେଘଧୁଆ, ସୁନେଲି ସକାଳ । ଝରକା ବାହାରେ ଗଛ ଗୁଡ଼ାକର ପତ୍ରଶୀର୍ଷ ଉପରେ କିଏ ଯେପରି ଲକ୍ଷ ଲକ୍ଷ ସୁନାର ପ୍ରଦୀପ ଜାଳିଦେଇ ଯାଇଅଛି ।" *୧ ପ୍ରକୃତି ପ୍ରତି ଗଳ୍ପକାରଙ୍କର ପ୍ରଚଣ୍ଡ ମମତା ଓ ଗଭୀର ଚିନ୍ତାଶୀଳତା ନିମ୍ନଲିଖିତ ଉକ୍ତିରୁ ସ୍ପଷ୍ଟ ହୋଇଉଠେ, ଯେତେବେଳେ ସେ କହନ୍ତି "ତୁଚ୍ଛ ଦୈନନ୍ଦିନତାର ବହୁ ଊର୍ଦ୍ଧ୍ୱରେ, ଆକାଶର ରଙ୍ଗ ଭୂମିରେ, ମେଘ ଓ ରୌଦ୍ରର ଝଡ ଓ ବିଦ୍ୟୁତର, ଆଲୋକ ଓ ଛାୟାର ଯେଉଁ ବିରାଟ ମହାନାଟକ ପ୍ରତି ମୁହୂର୍ତ୍ତରେ ଅଭିନୀତ ହୋଇଯାଉଅଛି, ତାହା କଣ କେବେ ଥରକ ପାଇଁ ଦେଖିଛନ୍ତି ଏଇ କ୍ଷୁଦ୍ର ପିପିଲିକାର ଦଳ । * ୨

ସ୍ୱାଧୀନତା ପରେ ଓଡ଼ିଆ ଗଳ୍ପ ସାହିତ୍ୟର ଜଣେ ବଶିଷ୍ଟ ଉଦ୍‌ଗାତା ଶ୍ରୀଯୁକ୍ତ ମହାନ୍ତି ସମାଜ ଜୀବନର ନିରଳସ ଛବି ପ୍ରଦାନ କରିବାରେ ଯଥାର୍ଥରେ ଜଣେ ସାର୍ଥକ କଳାକାର । ବୌଦ୍ଧଯୁଗୀୟ

---

* ୧—ପାଗଳା ଗାଉଦର କାହାଣୀ—ପୃ ୧୯

ଚରିତ୍ରଠାରୁ ସଂଗ୍ରାମଶୀଳ ବିଂଶ ଶତାବ୍ଦୀର ନିଃସଙ୍ଗ ଲକ୍ଷ୍ୟହୀନ ମାନବର ଚରିତ୍ରରେ ତାଙ୍କର ଲେଖନୀ ସଜୀବ ହୋଇ ଉଠିଛି । ସେ ପରିସ୍ଥିତି ଓ କାଳର କରାଳ ସ୍ରୋତରେ ବିଲୁପ୍ତ ପ୍ରାୟ ମଣିଷର ଜଣେ ଚିତ୍ରକର; ଶୁଷ୍କ ଆଦର୍ଶର ପ୍ରଖ୍ୟାପକ ନୁହନ୍ତି ।

---

* ୨—ପାଗଳା ଗାରଦର କାହାଣୀ—ପୃ ୨ ୨୪



# ଭୀମଭୋଇ କ'ଣ ଅନ୍ଧ ?

ଅଧ୍ୟାପକ-ଭାବଗ୍ରାହୀ ଭୂୟାଁ

ଏ ଦେଶର ଏକ କନ୍ଧ କବି-ଭୀମ ଭୋଇ— ଅନ୍ଧାରି ମୁଲକର ଅପନ୍ତରା ବଣରେ ଯାହାର ଜନ୍ମ-ମରଣ ସବୁ କିଛି ! ଦାରିଦ୍ର୍ୟ, ଅନାହାର, ସାମାଜିକ ନିଷ୍ଠୁରତାର ନିକ୍ଷେପିତ ଏକ 'କାଠ ଜୀବ' ସେ । ଶିକ୍ଷା ତ ତା ଲାଗି ସାତ ସପନ, ଅକ୍ଷର ସହିତ ପରିଚୟ ବି ଯାହାର ନଥିଲା । ଧର୍ମ-ଧାରଣାର ସୀମା ସ୍ପର୍ଶ କରିବା

ମଧ୍ୟ ଯାହାର ଜାତିଆଣ ଅଧିକାରର ବାହାରେ— ସେ ପୁଣି ହେବ-ଖାଲି କବି ନୁହେଁ, ଦାର୍ଶନିକ । ଧର୍ମ ପ୍ରଚାରକ ନୁହେଁ— ନିର୍ଗୁଣ ମାର୍ଗର, ନିଷ୍କାମ ଧର୍ମର ପଥପ୍ରଦର୍ଶକ ? ଯାହାର ମାତ୍ର ପଦେ କଥାରେ, ଭକ୍ତ ମନର ଗୋଟିଏ ରେଖାରେ ଫୁଟି ଉଠିବ—

"ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ପାଉ—" ଭଳି ସାର୍ବଜନୀନ ଉଦାର ଧର୍ମର ଅମଳ କଳି ?— ଏ କଥା ଭାବିଲେ, ତାର ଦେଶର ତାର ଜାତିର କେଉଁ ବ୍ୟକ୍ତିର ଅବା ଗର୍ବ ଗୌରବରେ ଛାତି ଫୁଲି ନ ଉଠିବ ? ସେ ମନ୍ତ୍ରଦ୍ରଷ୍ଟା ଋଷି କବିର ମନ୍ତ୍ରମୂଳ-ପ୍ରତିଭା-ପରିଚିତ ପାଇଁ କେଉଁ ଜିଜ୍ଞାସୁର ପ୍ରାଣ ବ୍ୟାକୁଳ ହୋଇ ନ ଉଠିବ ? ତେଣୁ ସେ ନିଷ୍ଚୟ ଆଲୋଡ଼ନ କରି ବସିବ କବି କୃତିତ୍ୱ-ତାର ସାର୍ଥକ ଲେଖନୀ ନିଃସୃତ ସୁଧାସ୍ରାବୀ କାବ୍ୟ 'ସ୍ତୁତି-ଚିନ୍ତାମଣି ।' ପୋଥିତ ଦୁର୍ଲ୍ଲଭ, ମିଳିଲେ ମଧ୍ୟ ସେ ଦୁରଧିଗମ୍ୟ । ତେଣୁ ସେ ନିଷ୍ଚୟ ଖୋଜି ବସିବ— ନିର୍ଭର ବିଶ୍ୱାସ ଯୋଗ୍ୟ, ପ୍ରାଚୀ ପ୍ରକାଶିତ, ସୁଦୀର୍ଘ ଆଲୋଚନା ସମ୍ବଳିତ ମୁଖବନ୍ଧ ସହ ଏହି କାବ୍ୟଟି ।

ମନ୍ଦିର ଭିତରେ ବିଅଁ ଦର୍ଶନର ଲାଳସା ଥିଲେ ମଧ୍ୟ ପ୍ରବେଶ ପଥରେ ମୁଖଶାଳା ଉପରେ ଦୃଷ୍ଟି ଫେରାଇ ନେବାକୁ କେଉଁ ଦର୍ଶକ ଅବା ମନେ ନ କରିବ ? ସେହିମତି ଗ୍ରନ୍ଥ ପ୍ରବେଶ ପୂର୍ବରୁ, ଗ୍ରନ୍ଥର ମୁକୁର ସ୍ୱରୂପ ମୁଖବନ୍ଧ ଉପରୁ ଦୃଷ୍ଟି ଫେରାଇ ନେଇ ହେବ ଅବା କିପରି ? ଅତଏବ ଯେ କେହି ପାଠକ ଏହି ମୁଖବନ୍ଧ ଉପରେ ଅନ୍ତତଃ ଏକ ବିହଙ୍ଗ ଦୃଷ୍ଟିପାତ କରିବାକୁ ଯାଇ ପ୍ରଥମ ପୃଷ୍ଠାର ମାତ୍ର କେତେକ ଧାଡ଼ି ଗଡ଼ାଇ ଗଲାପରେ ନିଷ୍ଚୟ ଚମକି ପଡ଼ିବ । ଯେତେବେଳେ ସେ ପଢ଼ିବ—"ତୃଣପ୍ରୁ ଗ୍ରାମ ଜାତିରେ କବି,

ସେ ପୁଣି ଅନ୍ଧ'' ସହାନୁଭୂତିରେ ପ୍ରାଣ ତାର ଅବଶ୍ୟ ଭରି ଉଠିବ-ସେ ଭକ୍ତ ପ୍ରତିଭା ଉପରେ ଭଗବାନଙ୍କର ଏଭଳି ଅବିଚାର ପାଇଁ । ହେଲେ ଅବା ସେ ଆଜି କଣ କରି ପାରିବ ? ଦଇବ ଲିଖନ-ଟିକେ କରିବ ଆନ ? ତେଣୁ ମାତ୍ର ଆହା ପଦେ କହି ସେ ତାର ବେଦନାବିଦ୍ଧ ପ୍ରାଣର ପରିଚୟ ଦେବ ସିନା ! ନ ହେଲେ ତାର ଆଜି ଉପାୟାନ୍ତର କଣ ଅଛି ?

ତାପରେ— ସେ ଅବଶ୍ୟ କବିଙ୍କର ଜନ୍ମାନ୍ଧତାର ଭୂରି ଭୂରି ପ୍ରମାଣ ପାଇବ ମୁଖବନ୍ଧ ଭିତରେ । କାବ୍ୟର ସଂକଳନ କର୍ତ୍ତା ଓଡ଼ିଆ ସମାଲୋଚନା ସାହିତ୍ୟର ଅନ୍ୟତମ ଆଦ୍ୟ ପ୍ରବର୍ତ୍ତକ ଓଡ଼ିଆ ପ୍ରାଚୀନ ତଥା ମଧ୍ୟ ଯୁଗୀୟ ସାହିତ୍ୟର ଅନ୍ୟତମ ଦ୍ରଷ୍ଟା ତଥା ସଂରକ୍ଷକ ପ୍ରାଚୀ ସମିତିର ପ୍ରତିଷ୍ଠାତା, ବାଗ୍ମୀ, ପଣ୍ଡିତ, ସାଧକ ୰ଆର୍ତ୍ତବଲ୍ଲଭଙ୍କର ବହୁ ପ୍ରମାଣର ଉଦ୍ଧୃତ ସହ ଅକାଟ୍ୟ ଯୁକ୍ତି ତା ମନରେ ଅବଶ୍ୟ ଏ ସମ୍ବନ୍ଧରେ ଦୃଢ଼ ପ୍ରତ୍ୟୟ ପ୍ରତିଷ୍ଠା କରିବ । ତେଣୁ ସେ ଆଜି ସେ ବିଷୟରେ ଅଧିକ ଚିନ୍ତା ଅବା କରିବ କାହିଁକି ? ଅତଏବ ସେ ବୋଲି ପରେ ବୋଲି ପାଠ କରି ଗ୍ଭଲିବ, କବିଙ୍କର କାବ୍ୟରସରେ ଆପ୍ଲୁତ ହୋଇନୁହେଁ, ତାଙ୍କର ଧର୍ମ ବିପ୍ଲବର ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ।

କିନ୍ତୁ-? ହଠାତ୍ ପୁଣି ଥରେ ସେ ଚମକି ପଡ଼ିବ, ପୂର୍ବାପେକ୍ଷା ଅଧିକ ବିସ୍ମିତ ହେବ ସେ—ଯେତେବେଳେ ଏକବିଂଶ ବୋଲିରେ ସେ ପାଠ କରିବ, କବିଙ୍କର ସ୍ୱୀକାରୋକ୍ତି—

"ବେଦ ଭୂଜରେ ପ୍ରତକ୍ଷ୍ୟ ଦେଖିଅଛି, ଥିଲା ଶଙ୍ଖଚକ୍ର ଚିହ୍ନ ।" ଏ କଥା କ'ଣ ସତ୍ୟ ? ଅନ୍ଧ କଣ ପ୍ରତକ୍ଷ୍ୟରେ ଦେଖିପାରେ ?

ଏ କଥା ଦର୍ଶନ କଲା ବେଳକୁ କବିଙ୍କର 'ଗୃରବରଷ ସମ୍ପୂର୍ଣ୍ଣ' ହୋଇଥିଲା, ତେଣୁ ପାଠକ ମନେ ମନେ ହୁଏତ ଭାବିବ ଯେ— 'କବି ଜନ୍ମାନ୍ଧ ନ ଥିଲେ, ବୋଧହୁଏ'। ଏ ଭାବନାକୁ ତାର ପୁଷ୍ଟ କରିବାକୁ ତାର ମନେ ପଡ଼ିବ ମୁଖବନ୍ଧରେ ଉଦ୍ଧୃତ ବିଜୟ ଚନ୍ଦ୍ର ମଜୁମଦାରଙ୍କର ଉକ୍ତି-'ଭୀମ ଯୌବନର ପ୍ରଥମ ଅବସ୍ଥାରେ ଚକ୍ଷୁ ଶକ୍ତି ହରାଇଥିଲେ।" ହେଲେ ତା ପରେ ପରେ ତାର ପୁଣି ସ୍ମରଣ ହେବ-ଏ ଉକ୍ତି ପ୍ରତି ଆର୍ତ୍ତବାବୁଙ୍କ ଆକ୍ଷେପୋକ୍ତି—"ସେ ଯେ କେଉଁ ପ୍ରମାଣ ବଳରେ ଏହା କହୁଛନ୍ତି ତାହା ତାଙ୍କୁହିଁ ଜଣା।"

ଏଣୁ ପାଠକ ନିରାଶ ହୋଇ ଭାବିବ ହୁଏତ ଏହା ଦୈବୀମାୟା ହୋଇପାରେ। ପ୍ରବୃଦ୍ଧ ସ୍ୱାମୀ ସ୍ୱ ମହିମା ବଳରେ ଅନ୍ଧ ଭୀମଙ୍କୁ ସ୍ୱୀୟ ଶଙ୍ଖ ଚକ୍ର ଚିହ୍ନ ଇତ୍ୟାଦି ଦେଖାଇଥିବେ। କିନ୍ତୁ ଏ ଯୁଗରେ ଜଡ଼ବାଦସର୍ବସ୍ୱ ତାର ଯୁକ୍ତିବାଦୀ ମନ ଏହାକୁ ସହଜରେ ଗ୍ରହଣ କରି ନେବ ଅବା କିପରି? ସେ କି'ଣ ମନେ ମନେ ମଜୁମଦାର ମହାଶୟଙ୍କୁ ସମର୍ଥନ କରି ଆର୍ତ୍ତବାବୁଙ୍କ ଯୁକ୍ତି ବିରୁଦ୍ଧରେ ପ୍ରତିଯୁକ୍ତି ଦେବାପାଇଁ କହିବ ନାହିଁକି—'ମଜୁମଦାର ମହାଶୟ ଗ୍ରନ୍ଥର ଏହି 'ଚରଣଟି' ଦୃଷ୍ଟିସମ୍ମୁଖରେ ରଖି, ଅନୁମାନ କରିଥିଲେ, "ଭୀମ ଯୌବନର ପ୍ରଥମ ଅବସ୍ଥାରେ ଚକ୍ଷୁ ଶକ୍ତି ହରାଇଥିଲେ"-ବୋଲି?

କଥାରେ କହନ୍ତି—'ଏକ ଆଖି, ଆଖି ନୁହେଁ, ଏକ ସାକ୍ଷୀ, ସାକ୍ଷୀ ନୁହେଁ। ଆର୍ତ୍ତବାବୁ ପରା ଭୀମଙ୍କୁ ଅନ୍ଧ କରିବା ପାଇଁ ଏକାଧିକ ଗ୍ରନ୍ଥରୁ ଉଦ୍ଧାର ଆଣିଛନ୍ତି। ତେବେ ଏଇ ଗୋଟିଏ ପ୍ରମାଣ ବଳରେ ପାଠକ ମଜୁମଦାରଙ୍କୁ ଏବଂ ନିଜର ଯୁକ୍ତିକୁ ଦୃଢ଼ କରି ପାରିବ ଅବା କିପରି? ତେଣୁ ଏଇଠାରୁ ସେ ଅଧିକରୁ ଅଧିକ

ସଚେତନ ହୋଇ ଗ୍ରନ୍ଥପାଠରେ ଅଗ୍ରଗତି କରି ଚାଲିବ ଅନ୍ତତଃ ଏକ ସପ୍ତାହ ବୋଲି'ର ଦ୍ୱାଦଶ ପଦ ପର୍ଯ୍ୟନ୍ତ ।

କିନ୍ତୁ ଛାପରେ ଯେତେବେଳେ ସେ ଆଖିରେ ଦେଖି ପଢ଼ିବ, ପୁଣି ଥରେ କାନରେ ଶୁଣିବା ପାଇଁ ଉଚ୍ଚାରଣ କରି ପଢ଼ିବ—

"ରୂପ ଗୁଣ ବର୍ଣ୍ଣ ଯାନୁ ଯଉବନ ନେତ୍ରେ ଯାହା ଅଛୁ ଦେଖି ।
ଶୋଭା ସୁନ୍ଦର ସୁରଙ୍ଗ ଦ୍ରବ୍ୟମାନ ଯାହା ଦେଖିଅଛୁ ଆଖି ॥
ବେଶ ଭୂଷଣ ବୟସ ଦ୍ରବ୍ୟମାନ ଭଲମନ୍ଦ ଆଦି ଯେତେ ।
କଳା ଗୋରା ରଙ୍ଗ ପିଙ୍ଗଳ ଶାମଳ ଦେଖିଅଛୁ ନେତ୍ରପଥେ ॥

× × ×

ଜନମ କାଳରୁ ଦେଖିଅଛୁ ପାପ ଚକ୍ଷୁର ଯେତେ ପାତକ—"
ସେତେବେଳେ ସେ ଅବା ତାର ଆଖି ଆଉ କାନ ଉଭୟଙ୍କ ପ୍ରତି ବିଶ୍ୱାସଘାତକତା କରି ଆଉ ବାବୁଙ୍କ ଯୁକ୍ତିକୁ ମାନିନେବ କିପରି ? ତେବେ ଅନ୍ତତଃ ଏକଥା ସତ୍ୟ ଯେ, ଏତିକିରେ ନିଷ୍କ୍ରାନ୍ତ ନ ହୋଇ କବିଙ୍କର ଅନ୍ୟ କୃତିମାନଙ୍କ ପ୍ରତି ଲକ୍ଷ୍ୟ ଦେବ । ତେଣୁ ସେ ନେଇ ପଢିବ ପ୍ରାଚୀ ପ୍ରକାଶିତ ଖ୍ରୀମ ଭୋଇଙ୍କର 'ଚଉତିଶା ମଧୁଚନ୍ଦ୍ର', ଭଜନମାଳାରେ ପ୍ରକାଶିତ ଦୁଇଶତ ଭଜନାବଳୀ – ଅତି ସନ୍ତର୍ପଣରେ କାଳେ କେଉଁଠି ସେ ଅନ୍ଧ ଖ୍ରୀମଙ୍କୁ ଦେଖି ପାରିବ, ହେଲେ ତାର ସେ ଆକାଂକ୍ଷା ଆକାଂକ୍ଷାରେ ହିଁ ରହିଯିବ । ବରଂ ସେ ପ୍ରତି ଚଉତିଶା ଅଥବା ଭଜନମାଳା ଶେଷରେ ଦେଖିବାକୁ ପାଇବ କନ୍ଧ ଖ୍ରୀମ ଭୋଇ କିମ୍ବା କନ୍ଧକୁଳ ଶୁଦ୍ଧ ଖ୍ରୀମ ଭୋଇଙ୍କୁ ସିନା ! ଅନ୍ଧ ଖ୍ରୀମ ଭୋଇଙ୍କୁ ନୁହେଁ । ତେଣୁ ସେ ମନେ ମନେ ସ୍ଥିର

କରି ନେବ, ପୂଜ୍ୟ ଆର୍ତ୍ତବାବୁ ଅଚ୍ୟୁତାନନ୍ଦଙ୍କୁ ଯିନା ଭଲ ଭାବରେ ପାଠ କରିଥିଲେ, ବୋଧହୁଏ ଖ୍ରମ ଭେଇଙ୍କୁ ନୁହେଁ । ତା ନ ହେଲେ ସେ କାହିଁକି ଆଭ୍ୟନ୍ତରୀଣ ପ୍ରତ୍ୟକ୍ଷ ପ୍ରମାଣକୁ ଏଡ଼ି ଦେଇ କଳ୍ପ ସଂହିତା, ଆଦ୍ୟ ସଂହିତା ଠାରୁ ଆରମ୍ଭ କରି ଘନଶ୍ୟାମଙ୍କ ଅଲେଖ ମାଳିକା ଶ୍ରୀଧରକୃତ ସିଦ୍ଧି ଚନ୍ଦ୍ରିକା ପର୍ଯ୍ୟନ୍ତ ଧାଉଡ଼ି ଦେଇଥାନ୍ତେ ? ଏ ସମସ୍ତଙ୍କର ଉଦ୍ଧତବ୍ୟୋକ୍ତି ଅପେକ୍ଷା ଖ୍ରମଙ୍କର ସ୍ୱକୃତ ଏବଂ ସ୍ୱୀକୃତ ପ୍ରଣାମ ଅଧିକ ନିର୍ଭର ଯୋଗ୍ୟ ନୁହେଁ ?

ଏଇଠି ପାଠକର ସ୍ୱତଃ ମନେ ପଡ଼ିଯିବ—ଏକ ଗଳ୍ପର ଜୀବନ୍ତ ସମାଧିପ୍ରାପ୍ତ ମୃତ ସୈନିକର ଅବସ୍ଥା କଥା, ଥରେ ଯୁଦ୍ଧ-ଭୂମିରେ ସୈନ୍ୟ ବିଭାଗର ଡାକ୍ତର ବୁଲି ବୁଲି ମୃତ ସୈନିକମାନଙ୍କ ଠାରେ 'ମୃତ' ମୋହର ଲଗାଉ ଥିଲେ । ଏକଦା ତାଙ୍କର ବସ୍ତୁର-ବିଭ୍ରାନ୍ତ ହେତୁ ହେଉ ଅଥବା ଆହତ ଏବଂ ମୂର୍ଚ୍ଛାଗତ ସୈନିକଙ୍କର ଦୁର୍ଭାଗ୍ୟ ହେତୁ ହେଉ, ତାଙ୍କର ମୂର୍ଚ୍ଛାବସ୍ଥାରେ ଡାକ୍ତର ତାଙ୍କୁ ମୃତ ବୋଲି ମୋହର ଲଗାଇ ଦେଲେ । ତାପରେ—ମେହେନ୍ତରମାନେ ଆସିଲେ ଶବଗୁଡ଼ିକୁ କବର ଖାନାକୁ ନେଇ ଯିବାକୁ । ସେତେବେଳକୁ ସେ ହତଭାଗ୍ୟ ସୈନିକଙ୍କର ସଂଜ୍ଞା ଫେରି ଆସିଥାଏ । ମେହେନ୍ତର-ମାନେ ତାଙ୍କୁ ଟାଣି ଶବାଧାରରେ ଲଦିଲା ବେଳକୁ, ସେ ପ୍ରତିବାଦ ଜଣେଇଲେ । ନିଜେ ବଞ୍ଚିଛନ୍ତି ବୋଲି ଜଣାଇବାକୁ ଯେତେ ଚେଷ୍ଟା କଲେ ମଧ୍ୟ ତାଙ୍କର ସମସ୍ତ ଚେଷ୍ଟା ବିଫଳ ହେଲା । କାରଣ ସେ ତ ବଞ୍ଚିଛନ୍ତି ବୋଲି ଡାକ୍ତରଙ୍କ ଅପେକ୍ଷା ଅଧିକ ଜାଣି ନ ଥିଲେ । ଡାକ୍ତରଙ୍କ ମୋହର, ତାଙ୍କର କହିବା ଅପେକ୍ଷା ନିଶ୍ଚୟ ଅଧିକ ଗୁରୁତ୍ୱପୂର୍ଣ୍ଣ ଥିଲା । ତେଣୁ ସେ ବିଚରାକୁ ଶେଷରେ ଜୀବନ୍ତ ସମାଧି ନେବାକୁହିଁ ପଡ଼ିଲା । ସେହିପରି, ଜଣେ ସାଧାରଣ ପାଠକ ଅପେକ୍ଷା ଜଣେ ପ୍ରୌଢ଼ ପ୍ରବୀଣ ଓ ସର୍ବାଧିକ

ବିଶ୍ୱାସ୍ୟ (ଉତ୍କଳୀୟ ଆଧୁନିକ କ୍ଷେତ୍ରରେ) ସାହିତ୍ୟ ସମାଲୋଚକଙ୍କ ଉକ୍ତି ଯେ ନିଶ୍ଚିତ ସତ୍ୟ ବୋଲି ଗୃହୀତ ହେବ, ଏ କଥା ଭାବିବା ଉଚିତ ପାଠକ ମାନଙ୍କ ବିଚାର ଉପରେ ! ହେଲେ ଖ୍ରୀଷ୍ଟଙ୍କ ସମ୍ବନ୍ଧରେ ଅଧିକରୁ ଅଧିକ ପାଠ କରି, ସେପରି ନିର୍ଭରଯୋଗ୍ୟ ପ୍ରମାଣ ନ ପାଇଲା ପର୍ଯ୍ୟନ୍ତ ସେ ଖ୍ରୀଷ୍ଟଧର୍ମୀ ଖ୍ରୀଷ୍ଟଙ୍କୁ ଅନ୍ଧ ବୋଲି କହି ନିଜର ବିଦ୍ୱତ୍‌ବୁଦ୍ଧି ପ୍ରତି ଅସମ୍ମାନ କରିବା କାହିଁକି ?

—*—

# ବୈଷ୍ଣବ ଧର୍ମ
# ଓ
# ଦେବଦୁର୍ଲ୍ଲଭ

ପରମାନନ୍ଦ ସାମଲ
ଦ୍ୱିତୀୟ ବାର୍ଷିକ କଳା (ଉଚ୍ଚମାନ)

କବି ସ୍ୱଭାବତଃ ଭାବପ୍ରବଣ । ଭାବନାର ସୂତାଖିଅରେ କଳ୍ପନାର ଜାଲ ବୁଣି ତାର ମାନସ କାବ୍ୟକୁ ବାନ୍ଧି ରଖେ । ଜୀବନର ଅଭିବ୍ୟକ୍ତି ତାର କାବ୍ୟ ମୁକୁରରେ ପ୍ରତିଫଳିତ ହୁଏ । ସତେ ଯେମିତି ସବୁ ଅବିକଳ, ବାସ୍ତବ, ଚିରନ୍ତନ ଓ ଶାଶ୍ୱତ । ତେଣୁ କବି ଜୀବନର ଆଲେଖ୍ୟ, ଦର୍ଶନ କାବ୍ୟକୁ ଯେତେ ଖୋଜିଲେ

ଯୋଗାଏ, କାବ୍ୟମ୍ଭା ସେତେ ବଳିଷ୍ଠ, ରୁଚିକର ଓ ଶ୍ରବ୍ୟାଶ୍ରାୟୀ ହୁଏ । କେବଳ କାବ୍ୟର ଅପ୍ରତିହତ ଘଟଣାକୁ କେନ୍ଦ୍ର କରି କବି ଜୀବନର ଦର୍ଶନ ଓ ଧର୍ମମତ ଉଦ୍ଧାର କରିବା ଏକବାରକେ ନିଷ୍କଣ୍ଟକ ଓ ନିର୍ଭରଯୋଗ୍ୟ ନୁହେଁ । କୌଣସି ଏକ ନିର୍ଦ୍ଦିଷ୍ଟ ପରିପ୍ରେକ୍ଷୀରେ ନିର୍ଦ୍ଦିଷ୍ଟ କବିର ଦର୍ଶନ ଓ ଧର୍ମମତ ଉଦ୍ଧାର କରିବାକୁ ହେଲେ ତଦ୍‌ଜନିତ ଆବଶ୍ୟକୀୟ ଉପାଦାନ ହେଉଛି, ସମସାମୟିକ ସମସ୍ୟା, ସମାଜ, ପାରିପାର୍ଶ୍ୱିକ ଘଟଣା ପ୍ରବାହ, ଜୀବନର ବାସ୍ତବ ଆଲେଖ୍ୟ ଓ ପୂର୍ବବର୍ତ୍ତୀ ସାରସ୍ୱତ କୃଷ୍ଣି ସମୂହ । ଏହି ସବୁ ଉପାଦାନର ଠିକଣଠି ପରୀକ୍ଷା ନିରୀକ୍ଷା ଏକାନ୍ତ କାମ୍ୟ ନହେଲେ କବିଙ୍କ ଧର୍ମମତ ଦର୍ଶନ ଏକବାରକେ ନିରପେକ୍ଷ ହେବନି ।

ଯଦିଓ ଧାରଣାର୍ଥକ "ଧୃ" ଧାତୁରୁ ଧର୍ମର ଉତ୍ପତ୍ତି ତଥାପି କବି ଜୀବନର ଧର୍ମମତ ଏକବାରକେ ଏ ନିୟମରୁ ବହିର୍ଭୂତ ଓ ଭିନ୍ନ ତଥ୍ୟାଶ୍ରୟୀ । ଜଣାଯାଏ ଜୀବନ ସହିତ ଧର୍ମ ଏକାନ୍ତ ଭାବେ ଜଡ଼ିତ । କିନ୍ତୁ ମେଥ୍ୟୁ ଆରନୋଲଡ଼ କହିଛନ୍ତି— Literature is the criticism of life." ତେଣୁ କେବଳ ଧର୍ମ ନୁହେଁ, ସାହିତ୍ୟ ମଧ୍ୟ ଜୀବନକୁ କ୍ଷୀରମାର ଭଳି ବା ଛାୟାକାୟା ଭଳି ସର୍ବଦା ଅନୁସରଣ କରୁଥାଏ । ପୁଣି ହଡସନ, ଯେତେବେଳେ କହିଛନ୍ତି— "It is fundamentally an expression of life, through the medium of language." (ଭାଷା ମାଧ୍ୟମରେ ସାହିତ୍ୟ, ମୂଳତଃ ଜୀବନର ଏକ ଅଭିବ୍ୟକ୍ତି)— ସେତେବେଳେ ସାହିତ୍ୟକୁ ଛାଡ଼ି ଧର୍ମର ସ୍ଥାନ କେଉଁଠି ? ବରଂ ଏହାର ସ୍ଥିତି-ଦୋଦୁଲ୍ୟମାନ, ଗତି-ପ୍ରତିହତ ଓ ପ୍ରକୃତି-ରସହୀନ, ଗନ୍ଧହୀନ ଓ ସ୍ୱାଦୁହୀନ ।

ଏହି ପରିପ୍ରେକ୍ଷୀରେ ବିଚାର କଲେ, ଆମ୍ଭମାନଙ୍କର, ରହସ୍ୟମଞ୍ଜରୀକାରୀ ବା ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର ପ୍ରେମରସ—

ରହସ୍ୟ ଉଦ୍‌ଘାଟନ, କବି ଦେବଦୁର୍ଲ୍ଲଭଙ୍କ ଧର୍ମର ସ୍ୱରୂପ କଣ, ତଦର୍ଥେ କବିଙ୍କ କାଳ ନିରୂପଣ ସର୍ବାଦୌ କର୍ତ୍ତବ୍ୟ ।

କବିଙ୍କ କାଳ ନିରୂପଣ କରିବାକୁ ଯାଇ, ପ୍ରାଚୀସମିତି ଅଧକ୍ଷ ଡଃ, ଆର୍ତ୍ତବଲ୍ଲଭ ମହାନ୍ତି କହିଛନ୍ତି— "ଅଚ୍ୟୁତାନନ୍ଦ ୧୬ଶ ଶତାବ୍ଦୀର ଲୋକ, ଏଥିରୁ ଅନୁମିତ ଯେ ଦେବଦୁର୍ଲ୍ଲଭ ଦାସ ଅଚ୍ୟୁତାନନ୍ଦଙ୍କର ୪୦।୫୦ ବର୍ଷର ପୂର୍ବବର୍ତ୍ତୀ, ସମସାମୟିକ, ଅଥବା ଶୂନ୍ୟସଂହିତା ପ୍ରସ୍ତୁତିର ପୂର୍ବକାଳର, ଅର୍ଥାତ୍ ଅଚ୍ୟୁତାନନ୍ଦଙ୍କର ୨୦।୩୦ ବର୍ଷର ପରବର୍ତ୍ତୀ" ପଣ୍ଡିତମାନେ ମତ ଦିଅନ୍ତି, କୌଣସି ଏକ ସାହିତ୍ୟ ବା ଧର୍ମ ପ୍ରଭାବ ଅନ୍ୟୁନ ଏକଶତ ବର୍ଷ ବ୍ୟାପୀ ତେଣୁ, ଯେହେତୁ, ଦେବଦୁର୍ଲ୍ଲଭ, ଅଚ୍ୟୁତାନନ୍ଦଙ୍କ ସମସାମୟିକ, ନିଶ୍ଚୟ ସେ ଅଚ୍ୟୁତାନନ୍ଦଙ୍କ କାବ୍ୟ ଓ ଧର୍ମ ଦ୍ୱାରା ଅନୁପ୍ରାଣିତ ହୋଇଥିବେ, ଏଥିରେ ସନ୍ଦେହ ବା ଦ୍ୱିଧା ମତ ଏକାନ୍ତ ବିରଳ ।

ବର୍ତ୍ତମାନ, ଅଚ୍ୟୁତାନନ୍ଦଙ୍କ ଧର୍ମ ବିଚାର ସାପେକ୍ଷ । ସର୍ବସମ୍ମତି କ୍ରମେ ଗୃହୀତ ଯେ, ଅଚ୍ୟୁତାନନ୍ଦ, ପଞ୍ଚସଖା ସମ୍ପ୍ରଦାୟର ଜନୈକ ଅଂଶୀଦାର ଓ ୧୬ ଶ ଶତାବ୍ଦୀର କବି । ୧୬ ଶ ଶତାବ୍ଦୀର ବା ପଞ୍ଚସଖା ଯୁଗରେ ଉତ୍କଳରେ ବୈଷ୍ଣବ ଧର୍ମର ପ୍ରାଦୁର୍ଭାବ ଓ ପ୍ରଗାଢ଼ ପ୍ରଭାବ ମଧ୍ୟ ଅଧୁନା ସାହିତ୍ୟରେ ବହୁଳ ପରିଲକ୍ଷିତ ଓ ବିଶେଷ ଭାବରେ ଓଡ଼ିଆ ଆଲୋଚନା ସାହିତ୍ୟରେ ଆଲୋଚକମାନଙ୍କୁ ଚଳ ଚଞ୍ଚଳ କରି ପକାଇଛି । ୧୫୧୦ ଖ୍ରୀଷ୍ଟାବ୍ଦରେ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରବର୍ତ୍ତକ ଶ୍ରୀ ଚୈତନ୍ୟ ଦେବଙ୍କ ଉତ୍କଳ ଆଗମନ, ଉତ୍କଳର ଧର୍ମ ଓ ସାହିତ୍ୟ ଜଗତରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କଲା । ଯଦିଓ ଏହାର ବହୁ ପୂର୍ବରୁ ଉତ୍କଳୀୟମାନଙ୍କ ଶିରା ପ୍ରଶିରାରେ ବୈଷ୍ଣବ ଧର୍ମର ସ୍ରୋତ ପ୍ରଖରଗତିରେ ସଞ୍ଚାଳିତ ହେଉଥିଲା,

ତଥାପି ଉତ୍କଳ ବା ଓଡ଼ିଶୀ ବୈଷ୍ଣବଗଣ ତନ୍ତ୍ର ମନ୍ତ୍ର ବା ଯୋଗ ଓ କାୟା ସାଧନା ମାର୍ଗର ଉପାସକ ଥିବାରୁ ଓଡ଼ିଶୀ ବୈଷ୍ଣବ ଧର୍ମ ବିଶେଷ ଲୋକପ୍ରିୟ ହୋଇ ନ ପାରି, ଚୈତନ୍ୟଙ୍କ କର୍ତ୍ତୃକ ପ୍ରବର୍ତ୍ତିତ ଶୁଦ୍ଧାଭକ୍ତି ବା ଗୌଡ଼ୀୟ ବୈଷ୍ଣବ ଧର୍ମ ବେଶ୍ ଆଦୃତ ହୋଇଥିଲା । ଏହି ଧର୍ମର ସାହିତ୍ୟିକ ମୂଲ୍ୟ ଥିଲା—ମାଧୁର୍ଯ୍ୟ, ସାଧନା ଥିଲା—ସହଜ ଓ ମତ ଥିଲା—ପ୍ରେମରସରେ ଉଚ୍ଛୁଳା । ଏହି ଭଳି ଏକ ଦ୍ୱିବିଧ ରୂପ ନେଇ ଓଡ଼ିଶାରେ ଏକ ଘଡ଼ିସନ୍ଧିମୁହୂର୍ତ୍ତ ଦେଖା ଦେଲା । ଏକ ପକ୍ଷରେ ଶ୍ରୀ ଚୈତନ୍ୟଙ୍କ କର୍ତ୍ତୃକ ପ୍ରବର୍ତ୍ତିତ ବୈଷ୍ଣବଧର୍ମ ଗୌଡ଼ୀୟ ଓ ପଞ୍ଚସଖା (ଜଗନ୍ନାଥ, ଅଚ୍ୟୁତ, ବଳରାମ, ଯଶୋବନ୍ତ ଓ ଅନନ୍ତ) ଙ୍କୁ କେନ୍ଦ୍ର କରି ପ୍ରବର୍ତ୍ତିତ ବୈଷ୍ଣବଧର୍ମ ଓଡ଼ିଶୀ ନାମରେ ଖ୍ୟାତିଲାଭ କଲା ।

ବର୍ତ୍ତମାନ, ଏକ ସୀମିତ ପରିସର ମଧ୍ୟରେ ଉଭୟ ସଂପ୍ରଦାୟର ଧର୍ମଦର୍ଶନ ବିଚାର ସର୍ବାଦୌ କର୍ତ୍ତବ୍ୟ । ନହେଲେ, ଦେବଦୁର୍ଲ୍ଲଭ କେଉଁ ପନ୍ଥାକୁ ଶରଣ କରିଥିଲେ, ତାହା ନିର୍ବିବାଦରେ କୁହାଯାଇ ପାରିବନି ।

**ଗୌଡ଼ୀୟ ବୈଷ୍ଣବ ଧର୍ମ**—ଗୌଡ଼ୀୟ ବୈଷ୍ଣବମାନେ, ଜ୍ଞାନମାର୍ଗ କର୍ମମାର୍ଗ ଅପେକ୍ଷା ଭକ୍ତିମାର୍ଗ ଅତି ସହଜ ଓ ସୁଗମ ହୋଇ ଥିବାରୁ ଭକ୍ତିମାର୍ଗର ପଥ ଅନୁସରଣ କରନ୍ତି । ଏମାନେ ମୁକ୍ତି ବା କାମନା ଅଭିଳାଷୀ ନ ହୋଇ ଭକ୍ତିଭାବେ ରାଧାକୃଷ୍ଣଙ୍କ ପ୍ରେମଲୀଳା କୀର୍ତ୍ତନ କରନ୍ତି । ତେଣୁ ବୈଷ୍ଣବଧର୍ମ ଦର୍ଶନ କେବଳ ରାଧାକୃଷ୍ଣଙ୍କ ପ୍ରେମଲୀଳା ବର୍ଣ୍ଣନାରେ ଶତମୁଖ । ଭଗବତ୍‌ଭକ୍ତି ଲାଭ ନିମନ୍ତେ ସେମାନେ ନବଧା ଭକ୍ତିର :—

"ଶ୍ରବଣଂ କୀର୍ତ୍ତନଂ ବିଷ୍ଣୋଃ ସ୍ମରଣଂ ପାଦସେବନମ୍;
ଅର୍ଚ୍ଚନଂ ବନ୍ଦନଂ ଦାସ୍ୟଂ ସଖ୍ୟମାତ୍ମନିବେଦନମ୍ ।

ବା

ଶ୍ରବଣ, କୀର୍ତ୍ତନ, ବିଷ୍ଣୁ ସ୍ମରଣ ପାଦସେବା ଅର୍ଚ୍ଚନା
"ବନ୍ଦନ, ଦାସ୍ୟ, ସଖ୍ୟ ଓ ଆତ୍ମ ନିବେଦନ ।"

ଆଚରଣ ଗ୍ରହଣ କରି ଆରାଧ୍ୟ ଦେବତା ଶ୍ରୀକୃଷ୍ଣଙ୍କୁ ଭକ୍ତର ଅର୍ଘ୍ୟ ଅର୍ପଣ କରନ୍ତି । ସେମାନେ ଆରାଧ୍ୟ ଦେବତା ସ୍ୱୟଂ ଭଗବାନ କୃଷ୍ଣ ଅବତାରୀ ରୂପେ ରାମ ନୃସିଂହାଦି ରୂପରେ ଅବତାର ନିଅନ୍ତି ବା କୃଷ୍ଣଙ୍କ ଅଂଶ ବା କଳା ରୂପେ ସ୍ୱୀକୃତ ହିଅନ୍ତି । ଯଥା—

"ଏତେ ଚାଂଶ କଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍,
ଇନ୍ଦ୍ରାରି ବ୍ୟାକୁଳଂ ଲୋକଂ ମୃଡ଼ୟନ୍ତି ଯୁଗେ ଯୁଗେ" ॥

ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଏମାନେ କୃଷ୍ଣଙ୍କଠାରୁ ଏକ ଓ ଅଭିନ୍ନ । ଜ୍ଞାନମାର୍ଗୀ ମାନଙ୍କ ନିକଟରେ ସେ (କୃଷ୍ଣ) ବ୍ରହ୍ମ ରୂପେ ଯୋଗୀମାନଙ୍କ ନିକଟରେ ପରମାତ୍ମା ଓ ଭକ୍ତିଧର୍ମୀଙ୍କ ନିକଟରେ ସେ ସ୍ୱୟଂ ଭଗବାନ ରୂପେ କଥିତ—

ତେଣୁ— "ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦବିଗ୍ରହଃ
ଅନାଦିରାଦି ର୍ଗୋବିନ୍ଦଃ ସର୍ବକାରଣକାରଣମ୍"

ଏ କଥା ବିଦଗ୍ଧଚିନ୍ତାମଣିକାର ଭକ୍ତ ଗଦ୍ ଗଦ୍ ଚିତ୍ତରେ କହିଛନ୍ତି:—

" ଆଦି ଅନାଦି କାରଣ ନିର୍ଗୁଣ ସଗୁଣ,
ଆମ୍ନାୟମ ସନାତନ ବ୍ରହ୍ମ ନିରୂପଣ ।
ଈଶ୍ୱର ସ୍ୱତନ୍ତ୍ର ସ୍ୱୟଂ ଭଗବାନ ତୁହି,
ଇଚ୍ଛାମୟ ସର୍ବଶକ୍ତିବନ୍ତ ତତ୍ତ୍ୱ ହିହି ।"

ଏହି ଗୌଡ଼ୀୟ ବୈଷ୍ଣବ ସଂପ୍ରଦାୟର ଭକ୍ତମାନେ ମର୍ତ୍ତ୍ୟ ଗୋଲୋକ ବା ଗୋପ ବୃନ୍ଦାବନ; ଦ୍ୱାରକାକୁ ଶ୍ରେଷ୍ଠ ଧାମ ବା ତୀର୍ଥ ରୂପେ ବିବେଚନା କରନ୍ତି । ଏହି ମର୍ତ୍ତ୍ୟ ଗୋଲକ ବା ଆରାଧ୍ୟ ଦେବ ଦେବୀ ରାଧାକୃଷ୍ଣଙ୍କର ସତ୍ତା ବା ଅସ୍ତିତ୍ୱ ସର୍ବବ୍ୟାପ୍ତିମୟୀ ଓ ସର୍ବ ଶକ୍ତିମୟୀ । ରାଧାକୃଷ୍ଣଙ୍କ ଆତ୍ମା ଏକ ଓ ଅଭିନ୍ନ । ତେଣୁ ରହସ୍ୟ ମଞ୍ଜରୀକାର ରାଧାଙ୍କ ପ୍ରତି କୃଷ୍ଣଙ୍କ ଆଶ୍ୱାସନୋକ୍ତି ଦେଇ କହିଛନ୍ତି —

"ତୁମ୍ଭେ ଗଲେ କି ଆମ୍ଭେ ଥିବୁଁ ରହି,
ଆମ୍ଭେ ଗଲେହେଁ ନିତ୍ୟସ୍ଥଳ ନାହିଁ
ଏ ଥଳ ଅଂଶ ଆଗ ହୋଇ ଯାଉ
ଗୋପ ଯମୁନା "ଗୋ" ନୀପବନ ହୋଇଥାଉ ସ୍ୱେ"

(ଅଷ୍ଟମଗ୍ରନ୍ଥ)

ଗୌଡ଼ୀୟ ଧର୍ମ ଶାସ୍ତ୍ରରେ ଅପ୍ରାକୃତ 'ପ୍ରେମ ମୂର୍ତ୍ତି ଜୟ ରାଧାହରି' ହେଉଛନ୍ତି ରସମୟୀ ବା ହ୍ଲାଦିନୀ ବା ଆନନ୍ଦମୟୀ ଶକ୍ତିର ଆଧାର । ତେଣୁ ଗୌଡ଼ୀୟ ଦର୍ଶନ ଶାସ୍ତ୍ର ପ୍ରେମଭକ୍ତି ବ୍ୟାଖ୍ୟାନରେ ଶତମୁଖ ଓ ଅନବଦ୍ୟ । ଯଦିଓ କାବ୍ୟାତ୍ମା ପ୍ରେମ କଥାରେ ଭରପୂର, ତଥାପି ଗୌଡ଼ୀୟ ଧର୍ମ ଓ ଦର୍ଶନ ଦୃଷ୍ଟିରୁ ଏହା ନିର୍ମଳ ଓ ଯୁକ୍ତିଳ । ଏହା ପୁଣି ସ୍ୱକୀୟା ଓ ପରକୀୟା ପ୍ରୀତିଭେଦେ ଦ୍ୱିବିଧ । ରୁକ୍ମିଣୀ, ସତ୍ୟଭାମା, ଜାମ୍ବବତୀ ପ୍ରଭୃତି ଅଷ୍ଟ ପାଟବଂଶୀକୁ ନେଇ ଏହା ସ୍ୱକୀୟା ଓ ରାଧାସମେତ ଅନ୍ୟାନ୍ୟ ଗୋପାଙ୍ଗନାମାନେ ପରକୀୟା ନାୟିକା ଭାବେ ଅଭିହିତ ।

## ଉତ୍କଳୀୟ ବା ଓଡ଼ିଶୀ ବୈଷ୍ଣବଧର୍ମ—

ଏହି ଓଡ଼ିଶୀ ବୈଷ୍ଣବଧର୍ମୀମାନେ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ବ୍ୟାଖ୍ୟାନରେ ଅହରହ ବ୍ୟସ୍ତବ୍ୟସ୍ତ । ଏମାନେ ଜ୍ଞାନ ଓ କର୍ମ ମାର୍ଗର

ସାଧକ ହୋଇଥିବାରୁ— ଜୀବାତ୍ମା ପରମାତ୍ମା ସହ ମିଳନ ନିମନ୍ତେ ସର୍ବଦା ବ୍ୟାକୁଳ । ନୀଳାଦ୍ରି ବିହାରୀ ଜଗନ୍ନାଥ ଏମାନଙ୍କର ଆରାଧ୍ୟ ଦେବତା । ଏମାନେ ବିଶ୍ୱାସ କରନ୍ତି ଜଗତର ନାଥ—

"ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"—

ଭଳି କୃଷ୍ଣ, ରାମ ଇତ୍ୟାଦି ଅବତାର ଯୁଗେ ଯୁଗେ ହୁଅନ୍ତି । ଓଡ଼ିଶୀ ବୈଷ୍ଣବମାନେ ନିତ୍ୟଲୀଳା, ନିତ୍ୟ ରାଧାକୃଷ୍ଣ, ଶୂନ୍ୟବାଦ ବା ନିରାକାର ପରମବ୍ରହ୍ମ, ସୃଷ୍ଟିତତ୍ତ୍ୱ, ସଗୁଣ, ନିର୍ଗୁଣ ନାମ ଓ ବ୍ରହ୍ମ, ମନ୍ତ୍ର, ଯନ୍ତ୍ର, ତନ୍ତ୍ର ପ୍ରଭୃତି ଯୋଗ ଓ ଆଗମ, ନିଗମ ପ୍ରଭୃତି ଠାରୁ ରସ ଗୁଣ ପ୍ରଭୃତି କାୟା ସାଧନା ଓ ନବଧା ଭକ୍ତିର ସ୍ୱୀକୃତି ଧର୍ମରେ ବିଶିଷ୍ଟ ସ୍ଥାନ ଦେଇଥାନ୍ତି । "ହରେ ରାମକୃଷ୍ଣ" ମହାମନ୍ତ୍ର ଏମାନେ ଜପ କରନ୍ତି । ସାଯୁଜ୍ୟ ମୁକ୍ତି ଗୁରୁବାଦର ପ୍ରାଧାନ୍ୟହିଁ ଏହି ଧର୍ମର ମୂଳମନ୍ତ୍ର । ସୃଷ୍ଟିବାଦ ବିଷୟରେ ବ୍ୟାଖ୍ୟାନ କରିବାକୁ ଯାଇ ସାଧକ ଜଗନ୍ନାଥ ଦାସ କହିଛନ୍ତି—

"ମହାଶୂନ୍ୟ ମୋ ଜ୍ୟୋତି ରୂପ । ଜ୍ୟୋତିରୁ ଜାତ ଠୁଳ ରୂପ ॥
ଠୁଳରୁ ଅର୍ଦ୍ଧ ମାତ୍ରା ହେଲା । ମାତ୍ରାରୁ ଓଁକାର ଜନ୍ମିଲା ।
ଓଁକାରୁ ଜନ୍ମ ଏ ଜଗତ । ଶୁଣ ପାର୍ବତୀ ଦେଇ ଚିତ୍ତ ॥

(ତୁଳାଭିଣା)

ଜଗନ୍ନାଥଙ୍କ ଯୁଗେ ଯୁଗେ ଅବତାରର ଗୁରୁତ୍ୱ ପ୍ରମାଣ ଦେବାକୁ ଯାଇ ବିପ୍ର ଦିବାକର ଦାସ ତାଙ୍କର ଜଗନ୍ନାଥ ଚରିତାମୃତରେ କହିଛନ୍ତି :—

"ଜଗନ୍ନାଥ ଯେ ଷୋଳକଳା,
ଚଉଁ କଳାଏ ନନ୍ଦବଳା ।

କଳାକୁ ଷୋଳକଳା କର,
ଗୋପେ ବନ୍ଧରେ ନରହର ।"

ବିଦଗ୍ଧ ଚିନ୍ତାମଣିକାର ମଧ୍ୟ ମାରବ ନୁହନ୍ତି :—

"ଅପ୍ରାକୃତ ପ୍ରେମ ମୂର୍ତ୍ତି ଜୟ ରାଧାହର
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତର ।"

## ଦେବଦୁର୍ଲଭଙ୍କ ଧର୍ମ ମତ :—

ଯେ ଭଳି ସମିଶ୍ରିତ ଯୌଗିକ ପଦାର୍ଥରୁ ଆବଶ୍ୟକୀୟ ମୌଳିକ ପଦାର୍ଥକୁ ପୃଥକ କରିବା ପାଇଁ ରାସାୟନିକ ପଦ୍ଧତି ପ୍ରୟୋଗ କରିବାକୁ ହୁଏ । ସେହିପରି ରହସ୍ୟମଞ୍ଜରୀକାବ୍ୟରୁ କବିଙ୍କ ଧର୍ମମତ ନିରୂପଣ କରିବା ପାଇଁ କାବ୍ୟର ଛନ୍ଦଗତ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଲୋଡ଼ା । ତଥାପି ଏହି କାବ୍ୟ, ବିଭିନ୍ନମତ ଧର୍ମୀ ଆଲୋଚକଙ୍କ ପାଇଁ ସମସ୍ତ ଉପାଦାନ ଯୋଗାଇ ପାରେନା । ପୁନଶ୍ଚ ଏ ଯାବତ କବିଙ୍କର ଜନ୍ମସ୍ଥାନ, ବଂଶଗତ ପରିଚୟ ଓ ଅନ୍ୟାନ୍ୟ ସାରସ୍ୱତ କୃତି ଅଜ୍ଞାତ, ତେଣୁ କବି କେଉଁ ମତାବଲମ୍ବୀ ଥିଲେ, ନିର୍ଭୁଲଭାବେ କହିହେବ ନାହିଁ । ବୈଷ୍ଣବଧର୍ମର ବିବିଧ ସଂପ୍ରଦାୟର ଆଚାର, ମତ ନିୟମକୁ ବିଚାର କଲେ ମଧ୍ୟ କବିଙ୍କ ଧର୍ମ ଦର୍ଶନ କାବ୍ୟରୁ ଦ୍ୱନ୍ଦ ଉପୁଜାଏ । ଜଣାଯାଏ, ୧୬ଶ ଶତାବ୍ଦୀରେ ଉତ୍କଳୀୟ ସାହିତ୍ୟିକ ସ୍ତରରେ ଯେଉଁ ବୈଷ୍ଣବଧର୍ମର ସ୍ରୋତ ପ୍ରବାହିତ ହେଲା, ତାହାର କଲ୍ଲୋଳମୟୀ କୂଳପ୍ଲାବିନୀ ବନ୍ୟାର ପତନ ନ ହୋଇ, ପ୍ରାୟ ଦୁଇଶତ ବର୍ଷପରେ ମଧ୍ୟ ପ୍ରଖର ଓ ପ୍ରଚଣ୍ଡ ଊର୍ମିମାଳାରେ ସାରସ୍ୱତ ଭଣ୍ଡାରକୁ ଉଦ୍‌ବୃଦ୍ଧି କଲା । ଏକ ପକ୍ଷରେ ଉତ୍କଳୀୟ ବୈଷ୍ଣବମାନେ ନୀଳାଦ୍ରି ବିହାରୀ ଜଗନ୍ନାଥଙ୍କୁ ଆରାଧ୍ୟ ଦେବତା

ରୁପେ ପୂଜା କରୁଥିଲେ ମଧ୍ୟ, ରାଧାକୃଷ୍ଣଙ୍କୁ ତ୍ୟାଗ ନ କରି, ଧ୍ୟାନ, ଧାରଣା ଓ କାୟା ସାଧନାରେ ନିମଗ୍ନ ଥିଲେ । ଅପର ପକ୍ଷରେ ଗୌଡ଼ୀୟ ବୈଷ୍ଣବମାନେ ମର୍ତ୍ତ୍ୟ ଗୋଲକବିହାରୀ ରାଧାକୃଷ୍ଣଙ୍କୁ ଜପ ମାଳି କରି ଜଗନ୍ନାଥଙ୍କୁ ପ୍ରଥମେ ବନ୍ଦନା କରୁଥିଲେ । କାୟା ସାଧନାକୁ ଗୌଣ ରୂପେ ସେମାନଙ୍କ ଧର୍ମରେ ସ୍ଥାନ ଦେଇ ନ ଥିଲେ ହେଁ ସମ୍ପୂର୍ଣ୍ଣ ଭାବେ ତ୍ୟାଗ କରି ପାରି ନ ଥିଲେ । ମୋଟ ଉପରେ ଦେବଦୁର୍ଲ୍ଲଭଙ୍କ ସମୟରେ ଏକ ଦ୍ୱିବିଧ ଧର୍ମ ବା ଜ୍ଞାନ ଭକ୍ତିମିଶା ଧର୍ମର ପ୍ରଚଳନ ହୋଇଥିଲା । ଏହା ତାଙ୍କ କାବ୍ୟରୁ ସ୍ପଷ୍ଟ ରୂପେ ପ୍ରତିଫଳିତ ହୁଏ ।

ପ୍ରଥମ ଛାନ୍ଦରେ ଉତ୍କଳୀୟ ବୈଷ୍ଣବମାନଙ୍କ ଭଳି ମଙ୍ଗଳାଚରଣରେ ସେ "ଜଗନ୍ନାଥଦେବଙ୍କ ଅଧିଷ୍ଠାନାଦି ନିରୂପଣ, ତଦୀୟ ବିଗ୍ରହ ବର୍ଣ୍ଣନା ଓ କବିତା ସ୍ଫୁରଣ ନିମନ୍ତେ ଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି"—

"ଇତି ଶ୍ରୀ ରହସ୍ୟ ମଞ୍ଜରୀ ଛନ୍ଦେ,
ନୀଳାଦ୍ରୀ ଚନ୍ଦ୍ରମା ଚରଣାରବିନ୍ଦେ,
ଦ୍ୱିତୀୟ ଛାନ୍ଦ ବର୍ଣ୍ଣନେ କେବଣ ବୃତ୍ତାନ୍ତ ।
କହିବାକୁ ଆଜ୍ଞା ହେଉ ଶ୍ରୀ ଜଗନ୍ନାଥ ।"

ଦ୍ୱିତୀୟ ଛାନ୍ଦରେ ଜଗନ୍ନାଥଙ୍କୁ ଅବତାରୀ ରୂପେ ଗ୍ରହଣ କରି କହିଛନ୍ତି :—

ଏକ ଦିନେ ଏକାନ୍ତ ମନ୍ଦିରେ ଜଗନ୍ନାଥ'
ମଣିମୟ ପଲଙ୍କ ଉପରେ ବିରାଜିତ ।"

କିନ୍ତୁ ପର ପଦରେ ଗୌଡ଼ୀୟ ମତବାଦୀ ହୋଇ ହ୍ଲାଦିନୀ ନାୟିକା ବା ଅଷ୍ଟପାଟବଂଶୀଙ୍କ ପ୍ରଧାନ ନାୟିକାଙ୍କୁ ଅବତାର୍ଣ୍ଣ କରାଇ କହନ୍ତି :—

"ବେଲଜାଣି ରୁକ୍ମଣୀ-ରମଣୀ-ଶିରୋମଣି ।
ପତି ପାଶେ ଏକଳା ପ୍ରବେଶ ଠାକୁରାଣୀ" । ୧ ।

ଏଠାରେ ଦ୍ୱିବିଧ ଧର୍ମର ସମନ୍ୱୟ ସମ୍ପାଦିତ ହୋଇଛି । କିନ୍ତୁ ପଞ୍ଚସଖା ଗ୍ରନ୍ଥ ବିଶ୍ଳେଷଣ କଲେ ଜଣାଯାଏ, ଦେବଦୁର୍ଲ୍ଲଭଙ୍କ ଧର୍ମ ଦର୍ଶନର ଏକ ବିଶିଷ୍ଟ ଦିଗ ହେଉଛି, ପ୍ରେମ ଭକ୍ତିର ମହାତ୍ମ୍ୟ ପ୍ରତିଷ୍ଠା । ଗୌଡ଼ୀୟମତ ବାଧା ହୋଇଥିବାରୁ ବୋଧେ ସେ ଜ୍ଞାନମାର୍ଗ ଅପେକ୍ଷା ଭକ୍ତିମାର୍ଗ ବା ବିଶ୍ୱାସ ଉପରେ ଦୃଢ଼ ଆଶା ପୋଷଣ କରନ୍ତି । କାରଣ ସେ ଜାଣନ୍ତି—"ବିଶ୍ୱାସେ ମିଳଇ ହରି ତର୍କେ ବହୁ ଦୂର ।" ତେଣୁ ପରକୀୟା ବା ଗୋପୀ ପ୍ରେମର ପ୍ରାଧାନ୍ୟ ଦର୍ଶାଇ କହିଛନ୍ତି —

"ଗୋପୀ ପ୍ରେମ ମହାତ୍ମ୍ୟନାମେ ପାଠ
ଆଦି ପୁରାଣ ବାଣୀ ମଧ୍ୟେ ଶ୍ରେଷ୍ଠ ।"

ଏହି ଗୋପାଙ୍ଗନା ମାନଙ୍କ ପରକୀୟା ପ୍ରେମଭକ୍ତିହିଁ ଭକ୍ତର ଭଗବତ୍ ପ୍ରାପ୍ତିର ପ୍ରଧାନ ଉପାୟ ବୋଲି ସେ ବର୍ଣ୍ଣନା କରିଛନ୍ତି—

"ଗୂଢ଼ଭକ୍ତି ମଧ୍ୟେ ପ୍ରେମଭକ୍ତି ଅଟେ ସାର,
ସେ ଭକ୍ତି ଅଟଇ କୋଠ-ଗୋପୀ ମାନଙ୍କର ଗୋ ।୨୪
ଗୋପୀଙ୍କ ଭଜନ ଭକ୍ତି ପ୍ରେମ ଭକ୍ତି ପାଇ,
ବିନା ପ୍ରେମ ଭକ୍ତିରେ ଦର୍ଶନ ମୋତେ ନାହିଁ ଗୋ ।୨୫

ଗୌଡ଼ୀୟ ଧର୍ମର ଦର୍ଶନ ବୈଧୀ ଭକ୍ତିରେ ଭଗବାନ କେବଳହିଁ ପୁରୁଷ, ପ୍ରକୃତି ତାହାର ଦାସୀ, ପ୍ରକୃତିସ୍ଥ ଜୀବଗଣ ପ୍ରକୃତ୍ୟାତ୍ମିକ । ତତ୍ତ୍ୱନାରୀ । ଏହି ଜୀବର ସ୍ତ୍ରୀତ୍ୱରେ ପରମଠାରେ ପ୍ରୀତିହିଁ ଗୋପଲୀଳା ।

"ପ୍ରେମ ଭକ୍ତି ପ୍ରାପତ ଗୋପୀଙ୍କ ପରସନେ
ଫୁଲିଙ୍ଗ ପାଲଟି ସ୍ତ୍ରୀଣ ହୁଅଇ ତକ୍ଷଣେ ଗୋ । ୨୬ ।
ଅଙ୍ଗସିଦ୍ଧି ହୋଇଲେ ମୋ ପାରୁଶରେ ରହି,
କୋଟି କଳ୍ପ ଗଲେ ହେଁ ପଲକେ ତାକୁ ନୋହି ଗୋ । ୨୭
ପୁରୁଷ ଅଙ୍ଗରେ କେହୁ ଦର୍ଶନ କରିବ
ମୁଣ୍ଡର ଉପରେ କେଶୁ ମୁଣ୍ଡେକ ବଳିବ ଗୋ ।୨୮
ସ୍ତ୍ରୀଗବୃନ୍ଦ ମଧ୍ୟରେ ପୁରୁଷବର ମୁହିଁ,
ସେ ପୁରେ ପଶିବକେ ପୁରୁଷ ଲିଙ୍ଗ ବହି ଗୋ । ୨୯
ମୋହ ବଳୁ ନାହିଁ ତହିଁ ହୋସର ପୁରୁଷ,
ସ୍ତ୍ରୀଗବୃନ୍ଦ ବେଢ଼ି ମୋର ସେବନ୍ତି ପାରୁଶ ଗୋ । ୩୦

ଜଣ ଠିକ୍ ଗୌଡ଼ୀୟ ବୈଷ୍ଣବମାନଙ୍କ ପରି ମର୍ତ୍ତ୍ୟ ଗୋଲକ ବା ଗୋପ, ବୃନ୍ଦାବନ, ଦ୍ୱାରକାର ଲୀଳା ଅତି ପୁଷ୍କଳ ଭାବେ ଚିତ୍ରଣ କରିଛନ୍ତି । ଏହି ମର୍ତ୍ତ୍ୟ ଗୋଲକକୁ ଗୌଡ଼ୀୟ ବୈଷ୍ଣବ ଧର୍ମ ଦର୍ଶନରେ ନିତ୍ୟ ଗୋଲକ ରୂପେ କଳ୍ପନା କରାଯାଇଛି । ଯଥା—

"ସେ ମହାରାସ ମଣ୍ଡଳୀ ନିତ୍ୟ ବୃନ୍ଦାବନେ
ତହିଁ ମୁଁ ବଞ୍ଚଇ ରାଧା ଅଙ୍ଗ ଆଲିଙ୍ଗନେ ଗୋ (୩୫)

× × ×

ତାଙ୍କୁ ଘେନି ଗୋପ ପୁରେ ନାନା କ୍ରୀଡ଼ା କଲୁ
ନିତ୍ୟସ୍ଥଳ ରାସନୃତ୍ୟ ବନେ ଭିଆଇଲୁ ଗୋ । ୩୯ ।

ଜଣ ଗୌଡ଼ୀୟ ମତାବଲମ୍ବୀ ହୋଇ କଳ୍ପନା କରିଛନ୍ତି—
ଏହି ମର୍ତ୍ତ୍ୟ ଗୋଲକ ନିତ୍ୟସ୍ଥଳ ବୈକୁଣ୍ଠ ଅପେକ୍ଷା ଶ୍ରେଷ୍ଠସ୍ଥାନ—
କାରଣ—

"ଗୋପୀ ବହାର ସ୍ଥଳୀ ଯେଉଁ ସ୍ଥାନ
କୋଟି ବୈକୁଣ୍ଠ ନୁହଇ ସମାନ ।" (୨୫)

ତଥାପି କବି ଉତ୍କଳୀୟ ମତକୁ ସଂପୂର୍ଣ୍ଣରୂପେ ତ୍ୟାଗ କରି ପାରି ନାହାନ୍ତି । ନିଜର ଦର୍ଶନ ପ୍ରତିପାଦନ କରିବାକୁ ଯାଇ କବି ଅଷ୍ଟପାଟବଂଶୀଙ୍କୁ ମର୍ତ୍ତ୍ୟ ଗୋଲକର ରସ ଲୀଳା ଦେଖାଇ ସନ୍ତୁଷ୍ଟ କରି ପାରି ନାହାନ୍ତି । ବରଂ ମର୍ତ୍ତ୍ୟଲୀଳା ଅପେକ୍ଷା ନିତ୍ୟ ଲୀଳା ଯେ ଶ୍ରେଷ୍ଠ ଏ ସବୁ କଥା କବି ୨୧ଶ ଛାନ୍ଦରେ ବର୍ଣ୍ଣନା କରିଛନ୍ତି । ଶ୍ରେଷ୍ଠତ୍ୱର ପରୀକ୍ଷା ପାଇଁ ରୁକ୍ମଣୀ ପ୍ରାଣ ପ୍ରିୟକୃଷ୍ଣଙ୍କୁ ଅଳି କରି କହିଛନ୍ତି ।

"ତୁମ୍ଭ ଆମ୍ଭ ରାଧା କାହିଁ କେମନ୍ତ ପ୍ରମାଣ ହେ
ଦେଖାଇବ ମୋତେ ମୂଳ ସ୍ଥାନ । ୧୧ ।

ନିତ୍ୟ ରାସସ୍ଥଳୀ ନିମନ୍ତେ ସିଦ୍ଧି ଆବଶ୍ୟକ । ତେଣୁ ଗୁରୁଙ୍କ କୃପାରୁ ମନ୍ତ୍ର ଯନ୍ତ୍ର ଭେଦ ଜାଣି ଅଂଗ ସିଦ୍ଧି କରିବାକୁ ପଡ଼ିବ । ଏହା ବୋଧେ କବିଙ୍କ ଉତ୍କଳୀୟ ଧର୍ମଦୃଷ୍ଟିରୁ ସ୍ୱୀକୃତ । ତେଣୁ ସେ କହିଛନ୍ତି—

"ବିନା ଯନ୍ତ୍ର ମନ୍ତ୍ର ଭେଦ ନ ଜାଣି କି ସିଦ୍ଧି ଗୋ
ବିନା ଗୁରୁ କୃପାରୁ କି ପାଇ"

୨୨ଶ ଛାନ୍ଦରେ କବି ବିଶେଷ ଭାବେ ଏକଦେଶଦର୍ଶୀ ହୋଇ ଉତ୍କଳୀୟ ଧର୍ମର ମୂଳମନ୍ତ୍ର ଉପରେ ଆଧାର କରି ବ୍ରହ୍ମାଣ୍ଡ-ଅଣ୍ଡ-କଟାହ ଠାରୁ ଆରମ୍ଭ କରି ବିଭିନ୍ନ ରୂପେ ପିଣ୍ଡ ବ୍ରହ୍ମାଣ୍ଡ, ନିତ୍ୟଲୀଳା, ନିତ୍ୟ ରାଧାକୃଷ୍ଣ, ଶୂନ୍ୟବାଦ ଓ ସୃଷ୍ଟି ତତ୍ତ୍ୱ, ଶରୀର ତତ୍ତ୍ୱ ବା ଶରୀର ଚକ୍ରଭେଦ, ମନ୍ତ୍ର, ଯନ୍ତ୍ର ତନ୍ତ୍ର ଇତ୍ୟାଦି କାୟା ସାଧନାର ନିଖୁଣ ଚିତ୍ର ରୂପାୟନ କରିଛନ୍ତି । ଅଷ୍ଟପାଟବଂଶୀଙ୍କୁ ସାଙ୍ଗରେ ନେବାକୁ ସଂପୂର୍ଣ୍ଣ ଅସମର୍ଥ ହେବାରୁ କବି କେବଳ

କୃଷ୍ଣଙ୍କ ସହ ନାୟିକା ଶ୍ରେଷ୍ଠା ରୁକ୍ମଣୀଙ୍କୁ ପଠାଇଛନ୍ତି । ଏହାହିଁ କବିଙ୍କ ମୌଳିକତା, ଯାହାକି ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ସଂହିତାରେ ଭିନ୍ନ ରୂପ ଧାରଣ କରିଥାଏ । କୃଷ୍ଣ ରୁକ୍ମଣୀଙ୍କୁ ସଙ୍ଗରେ ନେଇ ଜଳପୁର ଅନଳପୁର, ତିମିରପୁର, ମନୋମୟପୁର, ଅହଙ୍କାର ମୟପୁର, ପାରି ହେବାପରେ ବେଦମାତାଙ୍କ ପୁରରେ ବିରଜା ଶିବପୁରରେ ଶିବ ପ୍ରଭୃତିଙ୍କୁ ଦର୍ଶନ କଲେ । ଅନେକ ପୁରୀ ଦେଖିବା ପରେ ବିଭୂତି ମଣ୍ଡଳ, ଅନନ୍ତଭୁବନ ଗରୁଡ଼ ଭୁବନ ଅର୍ଥାତ ବୈକୁଣ୍ଠ ପୁରରେ ପ୍ରବେଶ ହେଲେ । ଆଦ୍ୟ ବା ନିତ୍ୟରାଧା କୃଷ୍ଣଙ୍କୁ ଦର୍ଶନ କରିବା ନିମନ୍ତେ କୃଷ୍ଣ ରୁକ୍ମଣୀଙ୍କୁ ତିପୁରିଙ୍କ ଦ୍ୱାରା ମନ୍ତ୍ର ଦିକ୍ଷା କରାଇଚନ୍ତି । କବି କହିଛନ୍ତି—

"କହନ୍ତି ମାଧବ ଶୁଣ ଅଖିଳ ମାତ,
ତୁମ୍ଭେ ସେ ତ୍ରିପୁରି ଗୁରୁ ସର୍ବପୂଜିତ । ୪୭ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ଭେଦ ତୁମ୍ଭେ କହିବ ।
ରୁକ୍ମଣୀ ଦେବୀଙ୍କ ପ୍ରତିକାରି କହିବ । ୪୮ ।

ତ୍ରିପୁରି ମନ୍ତ୍ର ଯନ୍ତ୍ର ଭେଦ କୃଷ୍ଣ ଚନ୍ଦ୍ରଙ୍କୁ ପ୍ରଦାନ କରି କହିଲେ-ଏ ମନ୍ତ୍ର ଗ୍ରହଣ କରି ରୁକ୍ମଣୀ ସିଦ୍ଧି ଲାଭ କଲେ । କାରଣ—

"ମର୍ତ୍ତ୍ୟ ଗୋପୀ ରାଧାଙ୍କୁ ଏ ଅଛନ୍ତି ରହିଁ,
ମନ୍ତ୍ର ସିଦ୍ଧ କରିବେ ସେ ରୂପକୁ ଧାୟି" । ୫୦ ।

ଏତିକି ନୁହେଁ, କବି ଜଣେ ପ୍ରକୃତ ଉତ୍କଳୀୟ ବୋଲି ଧ୍ରମ ପ୍ରମାଣିତ ହୁଏ । କାରଣ ସେ, ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ସଂହିତା ଦ୍ୱାରା ବହୁ ଭାବେ ପ୍ରଭାବିତ ହୋଇ କାବ୍ୟର ୨୨ଟି ଛାନ୍ଦରେ ବହୁଳ ଭାବେ ଅଚ୍ୟୁତଙ୍କ ଉତ୍କଳୀୟ ଦର୍ଶନ ପ୍ରୟୋଗ କରିଛନ୍ତି ।

ନିଗମ, ନତ୍ୟ, ଅଗମ, ବ୍ରହ୍ମ, ସୁଦର୍ଶନ ଚକ୍ର ଶଙ୍ଖ, ଚକ୍ର, ଗଦା, ପଦ୍ମ, ବର୍ତ୍ତୁଳ ମଣ୍ଡଳ, ଅଷ୍ଟଦଳ କମଳ କେଶର, ଷୋଡ଼ଶ ଦଳ, ଇତ୍ୟାଦି କେବଳ ଉତ୍କଳୀୟଧର୍ମର ସ୍ୱୀୟ ମତ ।

ପ୍ରକୃତପକ୍ଷେ ଭକ୍ତ ଦୃଷ୍ଟିରୁ କବି ଉତ୍କଳୀୟ ନୁହଁନ୍ତି । କାରଣ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରେମ ଦ୍ୱିବିଧ-ପରକୀୟା ଓ ସ୍ୱକୀୟା । ରାଧା ଓ ଅନ୍ୟାନ୍ୟ ଗୋପାଙ୍ଗନାମାନଙ୍କୁ ନେଇ ପରକୀୟା ଓ ଅଷ୍ଟପାଟବଂଶୀ, ଯଥା— ରୁକ୍ମିଣୀ, ସତ୍ୟଭାମା, ମିତ୍ରବିନ୍ଦା, ସୁନନ୍ଦା, ସାବିତ୍ରୀ, ସୁଶୀଳା, ଜାମ୍ବବତୀ ଓ ଲକ୍ଷ୍ମଣାଙ୍କୁ ନେଇ ସ୍ୱକୀୟା ପ୍ରୀତି ରଚିତ । ଯଦିଓ ଜାମ୍ବବତୀଙ୍କ ନାରୀ ସୁଲଭ ଈର୍ଷାକ୍ତ ଆକ୍ଷେପୋକ୍ତି—

"କେଉଁଣ ଦେଶର ସଖୀ
କେ କେମାନେ ଅଛ ଦେଖି
ଏକ ଏକ ଯୁବତୀଙ୍କ ଦୁ ଦୁଇ ଭ୍ରତା,
× × × × ×

ଏବଂ

ତେବେ କମ୍ପା ବ୍ରଜକାନ୍ତା
ନକୁଛ ଜନ ବନିତା
ହୋଇଣ ଉଚ୍ଛିଷ୍ଟ ଅଙ୍ଗ ପ୍ରଭୁରେ ଦେଇ
ଆଜ୍ଞା ଦେଲେ ଶ୍ରୀମୁଖେ ଯାହା,
ରାଧା ଠାକୁରାଣୀ ତାଙ୍କ ଅର୍ଦ୍ଧାଙ୍ଗ ପ୍ରିୟା ।୮।"

ପରକୀୟା ପ୍ରୀତିର ଜ୍ୱଳନ୍ତ ପ୍ରମାଣ । ତଥାପି କବିଙ୍କୁ ପରକୀୟା ପ୍ରୀତିର ପୂଜାରୀ କୁହାଯାଇ ପାରିବ ନାହିଁ । କାରଣ ରାଧା ଓ ଗୋପୀମାନଙ୍କର ପ୍ରେମ ଯେ ବୈଧ ଏବଂ ଏହି ଗୋପାଙ୍ଗନାମାନେ ନିତ୍ୟ

ରାଧାକୃଷ୍ଣଙ୍କ ଅଂଶ ବିଶେଷ, ତାହା କବି ସ୍ପଷ୍ଟ କାବ୍ୟରେ ଉଲ୍ଲେଖ କରିଛନ୍ତି । ସେ ମୁକ୍ତି ବା ମୋକ୍ଷ କାମନା କରି ଭକ୍ତିଳୀପ୍ସୁ ଭାବେ, ନିଜର ଜୀବାତ୍ମାଙ୍କୁ ପରମାତ୍ମାଙ୍କ ମିଳନ କରିବା ନିମନ୍ତେ ଆଶା ପୋଷଣ କରି କହିଛନ୍ତି—

"ପ୍ରେମ-ପୂର୍ବ-ଭକ୍ତ୍ୟା ଲଭନ୍ତି ନିତ୍ୟ ସ୍ଥାନ,
ଆଉ ଭକ୍ତି ଦାସ୍ୟ ସଖ୍ୟ ବାତ୍ସଲ୍ୟ ଏ ଜାଣ ଗୋ ।୩୧।"

ମୋଟ ଉପରେ କହିବାକୁ ଗଲେ, ଦେବଦୁର୍ଲ୍ଲଭ କୌଣସି ଗୋଟିଏ ସଂପ୍ରଦାୟର ପର୍ଯ୍ୟାୟଭୁକ୍ତ ନ ହୋଇ ଜଣେ ଖାଣ୍ଟି ବୈଷ୍ଣବ ଥିଲେ । ସେ କୌଣସି ଗୋଟିଏ ସଂପ୍ରଦାୟ ଦ୍ୱାରା ସଂପୂର୍ଣ୍ଣ ରୂପେ ପ୍ରଭାବିତ ହୋଇ ନଥିଲେ କି ସଂପୂର୍ଣ୍ଣ ତ୍ୟାଗ କରି ପାରି ନଥିଲେ । ତେଣୁ, ସେ, ନିଜକୁ ବୋଧେ ଜଣେ ପ୍ରକୃଷ୍ଟ ବୈଷ୍ଣବ ଧର୍ମୀ ଭାବେ ପ୍ରମାଣିତ କରିବା ପାଇଁ ବୈଷ୍ଣବମାନଙ୍କର ମହିମା ଗାନ କରି କହିଛନ୍ତି—

"ମନୁଷ୍ୟ କୋଟିଏ ମିଳେ ଉତ୍ତମ ଜଣେକ
କୋଟିଏ ଉତ୍ତମ ଯାଇ ସାଧୁ ମିଳେ ଏକ,
କୋଟି ସାଧୁ ମଧ୍ୟେଣ ବୈଷ୍ଣବ ଏକ ଜାଣ
କୋଟିଏ ବୈଷ୍ଣବେ ସେ ଲଭଇ ସନ୍ଥପଣ
।୩୩।" (୨୪ଶ ଛାନ୍ଦ)

କବି ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ସଂହିତା ଦ୍ୱାରା ବହୁମାତ୍ରାରେ ଅନୁପ୍ରାଣିତ ହୋଇଥିବାରୁ କବିଙ୍କୁ ଭକ୍ତିଳୀପ୍ସୁ ବୈଷ୍ଣବ ଧର୍ମୀ ରୂପେ ଗ୍ରହଣ କରିବାପାଇଁ ରହସ୍ୟ ମଂଜରୀ ବହୁ ଉପାଦାନ ଯୋଗାଏ । ହେଲେ; କବି ଯେ ଗୌଡ଼ୀୟ ମତବାଦୀ ନୁହଁନ୍ତି ବା ଏହାର କୌଣସି ଯୁକ୍ତିଯୁକ୍ତ ପ୍ରମାଣ ରହସ୍ୟମଞ୍ଜରୀ ଦିଏନା । ଏକଥା ଏକାନ୍ତ ଭାବେ ନିର୍ଭୁଲ ଓ ସ୍ପଷ୍ଟ ରୂପେ କହି ହେବ ନାହିଁ ।

ଉଭୟ ସଂପ୍ରଦାୟର ଧର୍ମ ଦର୍ଶନ ଦୃଷ୍ଟିରୁ ଡଃ ଆର୍ତ୍ତବଲ୍ଲଭଙ୍କ ଭଳି ନିରପେକ୍ଷ ଭାବେ କହିବାକୁ କୌଣସି ଏକପନ୍ଥୀ ନ କହି "ଦେବ ଦୁର୍ଲ୍ଲଭ ଦାସ ଜଣେ ପ୍ରକୃତ ବୈଷ୍ଣବ ଥିଲେ" ବୋଲି କହିବା ଯୁକ୍ତିଯୁକ୍ତ, ବଳିଷ୍ଠ ଓ ସମିଚୀନ।

ଯୁଗେ ଯୁଗେ ଈଶ୍ୱର ଓ ମନୁଷ୍ୟ ମଧ୍ୟରେ ଥିବା ଭଗବତ୍ ବିଶ୍ୱାସକୁ କେନ୍ଦ୍ରକରି ଧର୍ମ ଜାଗି ଉଠେ। ବିଭିନ୍ନ ଆବରଣ ଓ ଆଭରଣ ମଧ୍ୟରେ ଧର୍ମର ପରିପ୍ରକାଶ ଘଟିଲେ ମଧ୍ୟ ସେ ସମସ୍ତଙ୍କର ଧର୍ମ ଧାରଣା ଓ କର୍ମ ପ୍ରେରଣା ଯେ ଏକ ଓ ଅଭିନ୍ନ, ଏଥିରେ କୌଣସି ଦ୍ୱୈଧତା ଓ ସନ୍ଦେହ ନାହିଁ। ଏହି ପରିପ୍ରେକ୍ଷୀରେ ବିଚାର କଲେ ୧୬ଶ ଶତାବ୍ଦୀରେ ପ୍ରଚଳିତ ଉତ୍କଳୀୟ ଧର୍ମ ଜଗନ୍ନାଥଙ୍କୁ ଉପ୍ଲ-କରି ଗତି ଉଠିଥିଲା। ତେଣୁ, ଉତ୍କଳରେ ଯେ, ଯେଉଁ ଧର୍ମରେ ଜାବ୍ୟ କବିତା ଲେଖିଲେ ମଧ୍ୟ, ଉତ୍କଳର ଧର୍ମ ଓ ସାହିତ୍ୟ ଜୀବନର କେନ୍ଦ୍ର ସ୍ୱରୂପ ଆରାଧ୍ୟ ଦେବ ଜଗନ୍ନାଥ ବିରାଜମାନ। ଏହି ବିଭିନ୍ନ ପ୍ରାନ୍ତର ଧର୍ମ ପ୍ରଚାରକଙ୍କ ଦୃଷ୍ଟିରେ ଆସି ନୀଳାଦ୍ରି ବିହାରୀ ଜଗନ୍ନାଥ ଅବତାର ହେଲେ ମଧ୍ୟ ଭିନ୍ନତା ମଧ୍ୟରୁ ଆଜି ରୂପ ନେଇଛି ଏକେଶ୍ୱର ବାଦର ପ୍ରତୀକ ସାହିତ୍ୟ, ସଂସ୍କୃତି ଏବଂ ଧର୍ମମତ ଦର୍ଶନ। ଯୁଗେ ଯୁଗେ ଜଗନ୍ନାଥଙ୍କୁ କେନ୍ଦ୍ର କରି ବହୁ ଧର୍ମ ପ୍ରଚାରକ ଉତ୍କଳରେ ସ୍ୱସ୍ୱ ମତବାଦକୁ ପ୍ରଚାରିତ କରି ଯାଇ ଅଛନ୍ତି। ତେଣୁ ମହାପ୍ରଭୁ ଶ୍ରୀ ଚୈତନ୍ୟଙ୍କୁ କେନ୍ଦ୍ର କରି ପ୍ରଚାରିତ ଗୌଡ଼ୀୟ ବୈଷ୍ଣବ ଧର୍ମ ଓ ପଞ୍ଚସଖାଙ୍କୁ ଭିତ୍ତି କରି ଉତ୍କଳୀୟ ବୈଷ୍ଣବ ଧର୍ମ ଦର୍ଶନ, ମିଳିତ ଭାବେ ଜଗନ୍ନାଥଙ୍କୁ କେନ୍ଦ୍ର କରି ଉତ୍କଳୀୟ ସାହିତ୍ୟ ଓ ଧର୍ମକୁ ଊନବିଂଶ ଶତାବ୍ଦୀ ଯାଏ ପ୍ରଖର ଗତିରେ ବାନ୍ଧି ନେଇ ଥିଲା। ତେଣୁ ୧୬ ଶ ଶତାବ୍ଦୀ ମଧ୍ୟରେ ଯେଉଁ କ୍ଷଣଜନ୍ମା ସାରସ୍ୱତ ସାଧକମାନେ ନିଜ ନିଜର ତଳିତଅଳି ଅମର ଲେଖମା ଅନବରତ

ତୁଳନା କର ଓଡ଼ିଆ ସାହିତ୍ୟ—ସେଥିରେ କେତୋଟି କାବ୍ୟ—ପ୍ରସ୍ତର ପକାଇ ଗଲେ ତାହା ସାଧକମାନଙ୍କର ସ୍ୱୀୟ ମୌଳିକତାର ପରିଚୟସୂଚକ ନୁହେଁ, ବରଂ ଏହା ପୂର୍ବବର୍ତ୍ତୀ ସାଧକମାନଙ୍କର ଧର୍ମ, ଦର୍ଶନ, ସାଧନା ଓ ପ୍ରତିଭାର ପ୍ରତିଫଳନ । ୧୬ ଶ ଶତାବ୍ଦୀରେ ଯେତେବେଳେ, ଉତ୍କଳୀୟ ସାଧକମାନେ, ଶୂନ୍ୟବାଦୀତାକୁ ଗୁଢ଼, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଭୂଲ, ମନ୍ତ୍ର, ଯନ୍ତ୍ର, ତନ୍ତ୍ର ଇତ୍ୟାଦି କାୟା ସାଧନାକୁ ପାଦଶୀର, ରାଧାକୃଷ୍ଣଙ୍କୁ ସାଧାରଣ ନରନାରୀ ରୂପେ ଏହି ମର-ଧରା-ଧାମକୁ ଓହ୍ଲାଇ ଆଣିବାକୁ ସମ୍ପୂର୍ଣ୍ଣ ଅନିଚ୍ଛୁକ ସେତେବେଳେ ଗୌଡ଼ୀୟ ପଣ୍ଡିମାନେ ନିତ୍ୟ ଗୋଲକରୁ ମର୍ତ୍ତ୍ୟ ଲୋକକୁ ନିତ୍ୟରାଧା କୃଷ୍ଣଙ୍କୁ ଅବତରଣ କରାଇ, ସାଧାରଣ ମାନବ ଜୀବନର ସୁଖ, ଶାନ୍ତି ଓ ତୃପ୍ତିର ଆଧାର, ପ୍ରେମରସର ଉଚ୍ଚୁଙ୍ଗ ଜୁଆରରେ ଉବୁଟୁବୁ କରାଇବା ଏକ ଅପରାଧମୂଳକ ପାପ ନୁହେଁ । ମାତ୍ର, ତତ୍କାଳୀନ ସାରସ୍ୱତ ସାଧକମାନଙ୍କ ପକ୍ଷେ ଏହା ଏକ ଘଡ଼ି ସନ୍ଧି ମୁହୂର୍ତ୍ତ । ଆବହମାନକାଳରୁ ଉତ୍କଳୀୟଗଣ ଗୃହ୍ୟ ଥିଲେ ସର୍ବଦା ଦ୍ୱନ୍ଦ୍ୱର ଅବସାନ ହେଉ । ଶାନ୍ତି, ମୈତ୍ରୀ, ପ୍ରଗତିର ପ୍ରତୀକ ନୀଳାଦ୍ରିବିହାରୀ ବୁଦ୍ଧ ଅବତାର ଜଗତ କାରଣ ଜଗନ୍ନାଥଙ୍କ ମୁଖ ନିଃସୃତ ବାଣୀ ସାହିତ୍ୟରେ ଜୟ ବୈଜୟନ୍ତୀ ଉଡ଼ାଉ, ସମାଜରେ ହିତ ପ୍ରେମର ବହ୍ନି ପ୍ରଜ୍ୱଳିତ ହେଉ, ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଜାତୀୟ ଐକ୍ୟ, ଦର୍ଶନ, ସଂସ୍କୃତି ଓ ଶିଳ୍ପ ସଂସ୍କୃତିରେ ସମନ୍ୱୟ ସମ୍ପାଦିତ ହେଉ । •

ତେବେ ଏଭଳିସ୍ଥଳେ, ସମନ୍ୱୟୀ, ବୈଷ୍ଣବଧର୍ମୀ ରହସ୍ୟ-ମଞ୍ଜରୀକାର, ଦେବଦୁର୍ଲ୍ଲଭ, ବାଦପିବେ ବା କାହିଁକି ???



# କୋଣାର୍କେ ଓ କବି ନୀଳକଣ୍ଠ

— ଶ୍ରୀ ସୁଦର୍ଶନ ଦାସ
୨ୟ ବାର୍ଷିକ କଳା (ଉଚ୍ଚମାନ)

ରାଧାନାଥ ଯୁଗର ସାହିତ୍ୟ ସୂର୍ଯ୍ୟ ଅସ୍ତ ହେବା ପରେ ସତ୍ୟବାଦୀର ମଞ୍ଜୁଳ ବକୁଳ ଛୁରିଅନା କୁଞ୍ଜର ସବୁଜ ପତ୍ରକୁ ରକ୍ତ ରଞ୍ଜିତ କରି ଉଇଁ ଆସିଥିଲେ ସତ୍ୟବାଦୀ ଯୁଗର ବାଳ ସୂର୍ଯ୍ୟ । ଏହି ନୂତନ ସୂର୍ଯ୍ୟର ଜନ୍ମଦାତା ହେଉଛନ୍ତି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଓ ତାଙ୍କର ସହକର୍ମୀ ବନ ବିଦ୍ୟାଳୟର ଶିକ୍ଷକଗଣ- ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପଣ୍ଡିତ କୃପାସିନ୍ଧୁ, ଆଚାର୍ଯ୍ୟ ହରିହର, ପଣ୍ଡିତ ବାସୁଦେବ ଓ ପଣ୍ଡିତ ଲିଙ୍ଗରାଜ । କର୍ମବୀର ଗୋପବନ୍ଧୁଙ୍କ ପ୍ରେରଣାରେ ଏହି ଯେଉଁ ନୂତନ ଗୋଷ୍ଠୀ ଜନ୍ମ ନେଲା ତାହା ସତ୍ୟବାଦୀ ଗୋଷ୍ଠୀ ଏବଂ ଏମାନେ ଯେଉଁ ସାହିତ୍ୟ ସୃଷ୍ଟି କଲେ ତାହା ସତ୍ୟବାଦୀ ସାହିତ୍ୟ ନାମରେ ପରିଚିତ । ଏହି ସତ୍ୟବାଦୀ ଗୋଷ୍ଠୀ ଓଡ଼ିଆ ସାହିତ୍ୟରେ ଏକ ନୂତନ ଦିଗ୍‌ଦର୍ଶନ ଦେଖାଇଛନ୍ତି ।

'କୋଣାର୍କେ' ପଣ୍ଡିତ ନୀଳକଣ୍ଠଙ୍କର ଏକ ଅନବଦ୍ୟ ସୃଷ୍ଟି । ଏହି କାବ୍ୟ ଓଡ଼ିଆ ସାହିତ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନଦାବୀ କରେ । ଏଥିରେ ତାଙ୍କର ପାଣ୍ଡିତ୍ୟ, କବିତ୍ୱ, ସୂକ୍ଷ୍ମଚିନ୍ତା, ଗଭୀର ଅନୁଭୂତି

ଓ ପ୍ରକୃତି-ପ୍ରୀତି ଆଦି ପ୍ରକାଶିତ ହୋଇଛି । କେହି କେହି ଏହି କାବ୍ୟକୁ ଇତିହାସ ବୋଲି କହନ୍ତି । କିନ୍ତୁ ଏହା ଇତିହାସ ନୁହେଁ, ଏକ କଳାତ୍ମକ କାବ୍ୟ । ପ୍ରଥମ ଭାଗ ରାମଚଣ୍ଡୀଠାରେ ରାତି ଓ ସକାଳ' । ଏହି ପ୍ରଥମ ଭାଗରେ କବି ଓଡ଼ିଶାର ଅତୀତ ଗୌରବକୁ ରାମଚଣ୍ଡୀ ମନ୍ଦିରରେ ନିଦ୍ରିତ ଯାତ୍ରୀମାନଙ୍କର ସ୍ୱପ୍ନ ମଧ୍ୟରେ ଅତୀବ କୌଶଳ ସହକାରେ ପ୍ରକାଶ କରିଛନ୍ତି । ଏହାର ଆରମ୍ଭ ବେଶ ନାଟକୀୟ, କୁମାର ପୂର୍ଣ୍ଣିମା; କିନ୍ତୁ ସ୍ନିଗ୍ଧ ଜୋସ୍ନା ନାହିଁ— ଆଶାତୀତ ଅତୀବ ପ୍ରଚଣ୍ଡ ଝଞ୍ଜା, ଏହା କେବଳ ଆକାଶ ଓ ପୃଥିବୀରେ ଆଲୋଡ଼ନ ସୃଷ୍ଟି କରି ନାହିଁ । କବି ହୃଦୟକୁ ମଥିତ କରିଛି । ସେଥିରୁ ବାହାରିଛି ଏକ ରସମୟ କାବ୍ୟ ।

'କୋଣାର୍କେ' କାବ୍ୟର ଉତ୍ତରାର୍ଦ୍ଧ 'ମାୟାଦେବୀ' । 'ମାୟାଦେବୀ'ର ସୃଷ୍ଟି ପ୍ରେରଣା କବି ଗଡ଼ଜାତ ଭ୍ରମଣ ସମୟରେ ଏକ ଭାଟ ମୁଖରୁ ଲାଭ କରିଥିଲେ । ସେହି ଭାଟଠାରୁ ଶ୍ରୁତ କିମ୍ବଦନ୍ତୀକୁ କବି 'ମାୟାଦେବୀ'ରେ ରୂପ ଦେଇଛନ୍ତି—"ଏ ଲୋକଟି ସଙ୍ଗେ କଥାବାର୍ତ୍ତା ହୋଇ ମୋ ମନରେ ଯାହା ହେଲା କହିବା ଦରକାର ନାହିଁ । ସେତିକବେଳେ ଇଂରେଜ କବି ସ୍କଟଙ୍କ 'Lay of the last minstrel' ମନେ ପଡ଼ିଥିଲା । ମୁଁ ଭାବିଥିଲି, ଏହିପରି ଗୋଟିଏ ଭାଟକୁ ଦେଖି ସ୍କଟ୍ ସେ କାବ୍ୟକୁ ଲେଖିଥିଲେ । ଏବେ କୋଣାର୍କ ନିର୍ମାଣ କଥା ଲେଖିବାକୁ ବସି ସେହି ଭାଟ କଥା ମନେ ପଡ଼ିଲା, ମୁଁ ମାୟାଦେବୀ କାବ୍ୟ ଲେଖିବାକୁ ବସି ପୁଣି ସପ୍ତାହକେ ଶେଷ କଲି ।"

ମାୟାଦେବୀ ପୂର୍ବପୂର ଇତିହାସ ବା କିମ୍ବଦନ୍ତୀ ଆକାରରେ ରଚିତ । ଏଠାରେ କିମ୍ବଦନ୍ତୀ ସତ୍ୟ ଘଟଣା ପରି ପ୍ରତ୍ୟୟ ଆଣିବାକୁ ସମର୍ଥ ହୋଇଛି । 'ମାୟାଦେବୀ' ଏକ ଦୁଃଖାତ୍ମକ କାବ୍ୟ, କିନ୍ତୁ

ଏହି ଦୁଃଖ ନୈରାଶ୍ୟମୂଳକ ନୁହେଁ । ଅନ୍ୟାନ୍ୟ କାବ୍ୟପରି ଏଥିରେ ପ୍ରଣୟହିଁ ମୂଳ କଥା । କିନ୍ତୁ ଏହି ପ୍ରଣୟରେ ଏପରି ଏକ ପୌରୁଷ ଓ ଦୃଢ଼ତା ସୂଚିତ ହୋଇଛି, ଯାହା ଓଡ଼ିଆ ସାହିତ୍ୟରେ ବିରଳ । କୁମାର ନରସିଂହ ଓ ସାମନ୍ତ କନ୍ୟା ମାୟାଦେବୀଙ୍କ ପ୍ରେମ, ରାଧାନାଥଙ୍କ ଉଷା ଓ ଜୟନ୍ତର ପ୍ରେମ ନୁହେଁ ବା ଶକୁନ୍ତଳା ଦୁଷ୍ମନ୍ତର ପ୍ରେମ ନୁହେଁ । ନରସିଂହଙ୍କର ମାୟାଦେବୀଙ୍କ ସହିତ ପ୍ରଥମ ସାକ୍ଷାତ ହୁଏ ଭଗ୍ନ ଲୁଣ୍ଠିତ ଶିଶୁପାଳ ଗଡରେ । ଦୁଇ ଚକ୍ଷୁର ମିଳନ ପରେ ପରସ୍ପର ପରସ୍ପର ପ୍ରତି ଆକୃଷ୍ଟ ହୁଅନ୍ତି । ସେହି ସ୍ଥାନରେ ଭଗ୍ନ ପର୍ଯ୍ୟଙ୍କରେ ତାଙ୍କର ହୁଏ ପ୍ରଥମ ମିଳନ । ନରସିଂହଙ୍କ ପିତା ଅନଙ୍ଗଭୀମ ଦେବ ତେଣେ ଯୁବରାଜଙ୍କର କାଶ୍ମୀର ରାଜକନ୍ୟାଙ୍କ ସଙ୍ଗେ ନିର୍ବନ୍ଧ କରେଇ ସାରିଛନ୍ତି । ନରସିଂହ ଏକଥା ଜାଣିଲା ପରେ ବାରବାଟୀ ଦୁର୍ଗରୁ ଶିଶୁପାଳଗଡ଼କୁ ଧାଇଁ ଆସି ମାୟାଦେବୀ ନିକଟରେ ଅଶ୍ରୁବିସର୍ଜନ କରିଛନ୍ତି । ମାୟା ନିଜର ସମସ୍ତ ଅସ୍ତିତ୍ୱକୁ ପୋଛି ନେଇ ନରସିଂହଙ୍କର ଦୁଃଖ ଦୂର କରିବାକୁ ଚେଷ୍ଟା କରି ନିଜ ସ୍ୱାମୀ ଓ କାଶ୍ମୀର ଜେମାଙ୍କ ହୃଦୟରେ ଯେପରି, ପାଠକ ମାନଙ୍କ ମନରେ ମଧ୍ୟ ସେହିପରି କାରୁଣ୍ୟ ଉସର ପ୍ଲାବନ ଛୁଟାଇଛନ୍ତି ।

ଆହୁରି ମଧ୍ୟ ଅଙ୍କସ ଗଡର ତସ୍କର ଠଙ୍କ ସହିତ ନରସିଂହ ଙ୍କର ସଂଘର୍ଷ ଏଇ କାବ୍ୟରେ ବର୍ଣ୍ଣିତ ହୋଇଛି ।

'କୋଣାର୍କ'ର ପ୍ରଥମ ଭାଗ 'ରାମଚଣ୍ଡୀଠାରେ ରାତ୍ରି ଓ ସକାଳ' ଏକ ନାଟକୀୟ ଛଟାରେ ରଚିତ । କବି ରାମଚଣ୍ଡୀଠାରେ ରାତ୍ରିକୁ ଛତିଶଟି ଏବଂ ସକାଳକୁ ବାଉଶଟି ପର୍ଯ୍ୟାୟରେ ବିଭକ୍ତ କରିଛନ୍ତି । କବି ଏଠାରେ ଅତୀତମୁଖୀ ହେବାର ଲକ୍ଷ୍ୟ କରାଯାଏ । ସେ ଅତୀତ

ଉତ୍କଳର ଐତିହାସିକ, ରାଜନୈତିକ, ଧର୍ମ, ବାଣିଜ୍ୟ ଓ ଲୋକସଂସ୍କୃତି ମର୍ମକ ଚିତ୍ରକୁ କାବ୍ୟ ମଧ୍ୟରେ ସ୍ଥାନ ଦେଇଛନ୍ତି । ରାମଚଣ୍ଡୀଠାରେ ରାତି ଓ ସକାଳ' ରାମକେଶୀ ରାଗରେ ରଚିତ । ବହୁତ ଗାଉଁଲି ଶବ୍ଦର ପ୍ରୟୋଗ ମଧ୍ୟ ଏଥିରେ ହୋଇଅଛି । 'ରାମଚଣ୍ଡୀଠାରେ ରାତିର ବର୍ଣ୍ଣନା କବିତ୍ୱ ପୂର୍ଣ୍ଣ ଓ ପ୍ରାଣମୟ । ' ସକାଳ ' ର ବର୍ଣ୍ଣନା ମଧ୍ୟ ପ୍ରାଣସ୍ପର୍ଶୀ ।

ପଣ୍ଡିତ ନୀଳକଣ୍ଠ ରାଧାନାଥ ସାହିତ୍ୟକୁ ତୀବ୍ର ସମାଲୋଚନା କରିଥିଲେ ହେଁ, ରାଧାନାଥଙ୍କଦ୍ୱାରା ବହୁ ଭାବରେ ପ୍ରଭାବିତ ହୋଇଛନ୍ତି, ଏହା ନିଃସନ୍ଦେହରେ କୁହାଯାଇ ପାରେ । 'ଚନ୍ଦ୍ରଭାଗା' ର ଲୋକପ୍ରିୟତା, ବର୍ଣ୍ଣନାଭଙ୍ଗୀ ଓ ବ୍ୟବହୃତଛନ୍ଦକୁ କବି ଅନୁକରଣ ନ କରି ରହି ପାରି ନାହାନ୍ତି । ସୁତରାଂ 'କୋଣାର୍କ' "ଚନ୍ଦ୍ରଭାଗା"ର ମୁଖଶାଳା ପରି ପ୍ରତୀୟମାନ ହୁଏ । କିନ୍ତୁ ଏ ସବୁ ସତ୍ତ୍ୱେ ପଣ୍ଡିତ ନୀଳକଣ୍ଠଙ୍କ କୋଣାର୍କ ଏକ ଅନବଦ୍ୟ ସୃଷ୍ଟି, ଏହା ବିନା ଦ୍ୱିଧାରେ ମାନିବାକୁ ହେବ ।

ଅନ୍ନଦା ଶଙ୍କରଙ୍କ ଭାଷାରେ—ନୀଳକଣ୍ଠ ଆଧୁନିକ ଉତ୍କଳର ସାଂସ୍କୃତିକ ଜୀବନର ଶ୍ରେଷ୍ଠ ପ୍ରତିନିଧି । ଜାତୀୟତାର ଉପାସକ ନୀଳକଣ୍ଠ ପ୍ରକୃତରେ ଜଣେ ଦେଶ-ପ୍ରେମୀ କବି । ତାଙ୍କ ଜାତୀୟ ଜୀବନର ଧାରା ବହୁମୁଖୀ । ଉତ୍କଳକୁ ଭିତ୍ତିଭୂମି କରି ଭାରତୀୟ ଲୁପ୍ତ ଗୌରବ ଆଦର୍ଶର ପୂଜାକରି ଶିଖିଛନ୍ତି ସେ । ଆମ ଜାତୀୟ ତପୋବନରେ ପାରିଜାତ ସୁରଭି ଭରିବାକୁ ନୀଳକଣ୍ଠ ସର୍ବଦା ବ୍ୟାକୁଳ । ଦୁଇଦୁଇଟି ବିଶ୍ୱଯୁଦ୍ଧର ସଂଘାତରେ ଆମ ଜାତୀୟ ଜୀବନର ସମୁନ୍ନତ ଆଦର୍ଶ କେଉଁଠି ଓ କ୍ଷୁଧିପ୍ଳୁତ । ପରାଧୀନ ଭାରତର ବିଫଳ ସ୍ୱପ୍ନ, ଭଗ୍ନ ଆଶା ଆମ ଜାତୀୟ ଜୀବନକୁ ପଙ୍ଗୁ ଓ

ଅଥର୍ବ କରନ୍ତି । ଏହି ଜାତୀୟ ଦୁର୍ଗତିକୁ ଲକ୍ଷ୍ୟ କରି ପଣ୍ଡିତ ନୀଳକଣ୍ଠ କହିଥିଲେ—"ଆଜି କିନ୍ତୁ ଆପଣଙ୍କୁ ଆମକୁ ଚିହ୍ନିବାକୁ ହେବ । ସର୍ବଦା ମନେ ରଖିବାକୁ ହେବ ଶତ ପରାଧୀନତା ଓ ଲାଞ୍ଛନା ସତ୍ତ୍ୱେ ପୃଥିବୀକୁ କିଛି ଦେବା ପାଇଁ ଭାରତବର୍ଷ ବଞ୍ଚିଛି । ନିଜର ଆତ୍ମା ପୁରୁଷକୁ ବିଶ୍ୱପୁରୁଷ ସହ ସମାନ କରିଦେବା ଭାରତର ଆଦର୍ଶ— ଏହା ବ୍ୟକ୍ତି ଆତ୍ମାର ଏକ ପ୍ରକାର ଉନ୍ନୟନ (Sublimation) ; ଏଥିଲାଗି ସାଧନା ଓ ଦର୍ଶନରେ ସଂଗ୍ରାମ ଓ ଚିନ୍ତାରେ ନିଜକୁ ପ୍ରତିଷ୍ଠିତ ହେବାକୁ ହେବ । ଏଇକଥା ଆମଠାରୁ ପୃଥିବୀ ଯେତେବେଳେ ଶିଖିବ, ସେତେବେଳେ ପରମାଣୁ ବୋମାରେ ତା'ର ଭାଗ୍ୟ ନିୟନ୍ତ୍ରିତ ହେବ ନାହିଁ । ଭବିଷ୍ୟତ ଲାଗି ଆମର ଏହି ବଳିଷ୍ଠ ବିଶ୍ୱାସ ଓ ଦୃଢ଼ ଆଶା ପୋଷଣ କରିବା ଉଚିତ ।" ଅତଏବ ବିଶ୍ୱମହାସମରର ଧ୍ୱଂସ ଲୀଳା ପରେ କବି ଜାତୀୟତାକୁ ନୂତନ ଭାବେ ଆବିଷ୍କାର କଲେ । 'କୋଣାର୍କ'ର ଏହି ଜାତୀୟତାହିଁ ସତ୍ୟବାଦୀ ସାହିତ୍ୟର ମୁଖ୍ୟ ସ୍ୱର ।

ପ୍ରତ୍ୟେକ ସାହିତ୍ୟିକ ଜଣେ ଦାର୍ଶନିକ । ସଂସାରିକ ଜଞ୍ଜାଳ ମଧ୍ୟରେ ବହୁ ଘାତ ପ୍ରତିଘାତ ଆଶା ନିରାଶା, ଦୁଃଖଦୈନ୍ୟ ଓ ଜୟ ପରାଜୟ ଦେଇ ମାନବର ଜୀବନ ତରୀ ଭାସି ଚାଲେ । ବହିର୍ଜଗତର ଘନ ଘଟା ମଧ୍ୟରୁ କବି ଯାହା ଉପଲବ୍ଧି କରେ ବା ହୃଦୟଙ୍ଗମ କରେ ତାହାକୁ ତାର କାବ୍ୟ ମଧ୍ୟରେ ସ୍ଥାନ ଦେଇଥାଏ । ସୁତରାଂ ତାର କାବ୍ୟ ମଧ୍ୟରେ ବହୁ ଦର୍ଶନପୂର୍ଣ୍ଣ ତତ୍ତ୍ୱ ଫୁଟିଉଠେ । କବିତ୍ୱ ଓ ଦର୍ଶନ ଏ ଦୁଇଟି ପରିପୂରକ । ନାଟକ କବିତ୍ୱ କବିତାରେ ଗଭୀର ରସ ସଂଚାର କରେ, ପ୍ରାଣସ୍ପନ୍ଦନର ଭଙ୍ଗୀରେ କବିତାକୁ ଜନପ୍ରିୟ କରାଏ । କିନ୍ତୁ ଦର୍ଶନ କବିତାକୁ ଦିବ୍ୟଚକ୍ଷୁ ଦିଏ । 'କୋଣାର୍କ'ର କବିତ୍ୱ ଓ ଦର୍ଶନର ସୁମଧୁର ସମ୍ପର୍କ ଘଟିଛି ।

ଉତ୍କଳୀୟ ରାଜା ପ୍ରଜା ସମ୍ପର୍କ, ରାଜାମାନଙ୍କର ବୀରତ୍ୱ, ରାଜ୍ୟବ୍ୟବସ୍ଥାର ପ୍ରକୃତ ବର୍ଣ୍ଣନାରେ କବି ସିଦ୍ଧହସ୍ତତା ଦେଖାଇଛନ୍ତି । ଓଡ଼ିଆ ରାଜାମାନଙ୍କର ଚତୁରଙ୍ଗ ବଳ ବାହିନୀର ବର୍ଣ୍ଣନା କବି ଏକ ଚତୁର କଳାକାର ରୂପେ ଚିତ୍ରଣ କରିଛନ୍ତି । କବି ନିଜର କବିତ୍ୱ ଗୁଣ ଯୋଗୁ କୋଣାର୍କର ପାଷାଣ ଦେହରେ ରସର ମନ୍ଦାକିନୀ ଝରାଇ ପାରିଛନ୍ତି । କୋଣାର୍କରେ ଚିତ୍ରଶିଳ୍ପର ମର୍ମବାଣୀ ସବୁ ଗୀତିମୟ ଓ ଜୀବନ୍ତ । ଶିଳ୍ପର ବିକାଶ ଓ ହୃଦୟର ଅଭିବ୍ୟକ୍ତି ଯୋଗୁ କୋଣାର୍କ ଏକ ଉତ୍ସାହକ ଗୀତି କାବ୍ୟ ପରି ପ୍ରତୀୟମାନ ହୁଏ । ଏହି ସବୁ ବର୍ଣ୍ଣନା କବିଙ୍କର ବହୁଶାସ୍ତ୍ରଦର୍ଶିତା ଓ ବିଦ୍ୱତ୍ତାର ପରିଚୟ ଦିଏ ।

ପାଣ୍ଡିତ୍ୟ ଓ ମନୀଷା, ଯୁକ୍ତି ନିଷ୍ଠା, ବୁଦ୍ଧି ଦୀପ୍ତି, ଦାୟିତ୍ୱ-ବୋଧ ଓ ସାହିତ୍ୟବୋଧରେ ତାଙ୍କ କବିତା ଭାସ୍ୱର । ନିଜର ପ୍ରଚେଷ୍ଟା ଓ ସାଧନା ବଳରେ ସେ ନିଜକୁ ଜଣେ ଶିକ୍ଷାବିତ୍ ପଣ୍ଡିତ ସାହିତ୍ୟିକ, ରାଜନୀତିଜ୍ଞ ସମାଲୋଚକ, ଶିଶୁ ସାହିତ୍ୟିକ, ଅନୁବାଦକ ଓ ସମାଜ ସଂସ୍କାରକ ଭାବରେ ପ୍ରତିଷ୍ଠିତ କରାଇ ପାରିଥିଲେ । ଓଡ଼ିଆ ସାହିତ୍ୟରେ ଲେଖନୀ ଚାଳନା କରି ସେ ଯଶସ୍ୱୀ ହୋଇଛନ୍ତି । 'କୋଣାର୍କ' ପଣ୍ଡିତ ନୀଳକଣ୍ଠଙ୍କର ଏକ ଉତ୍ତୋରୀର୍ଣ୍ଣ ସଫଳ ସୃଷ୍ଟି ।






# ମରୁ-ସାଗର

ଶ୍ରୀ ପ୍ରଫୁଲ୍ଲ କୁମାର ଦାଶ
୨ୟ ବାର୍ଷିକ କଳା (ଉଚ୍ଚମାନ)

ଦୂର ଆକାଶର ମଥାନ ତଳେ ଧରଣୀ ଛୁଇଁ ଉଡ଼ିଗଲେ ଦୁଇଟି ଶ ନ୍ତ କପୋତ—

ବିପର୍ଯ୍ୟସ୍ତ ଗୋଧୂଳିର ନରମ ଆସ୍ତରଣ ତଳୁ ମୁହଁ ଉଠାଇ ରୁହିଁଲ 'ଇନ୍ଦ୍ରଶ୍ରୀ' । ସନ୍ଧ୍ୟାର ଆକାଶ ତଳେ ମେଶି ହୋଇ ଗଲେଣି ଅଗଣନ ବାଦଲ । ଅସରନ୍ତି କାଳିମା । ଦୂରରୁ···ଦିଗନ୍ତ ସେପାରୁ ପହଁରି ଆସୁଛି ସନ୍ଧିର କଳାବେଣୀ । ପହଁରି-ପହଁରି ଭାସି ଆସୁଛି ମନର ମାଳଞ୍ଚରୁ ଲକ୍ଷ୍ୟହଜା ସ୍ମୃତିର ତରଙ୍ଗ ।

—× × "ତୁ ଲେଖିଲୁନି ଅପା, ତୋର ସ୍ନେହ, ମମତା ଅସରନ୍ତି ଉଚ୍ଛ୍ୱାସ ଭିତରୁ ଚିରଦିନ ଲାଗି ବଂଚିତ କଲୁ ମୋତେ । ହେଲେ—ସେ ଦିନର ସେଇ ଅବୋଧ୍ୟ ଖିଆଲ ନେଇ ତୋ

ପାଖରେ ଆଜ ଅଳା କରୁଛୁ ମୁଁ—ଥରଟ ପାଇଁ ତୁ ଆସିବୁ । ଥରଟିଏ ତୋତେ ପାଖରେ ପାଇଲେ ଏଇ ମନର କେତେ ଅବଶୋଷ ମୋର ମେଣ୍ଟିଯିବ । କେତେ ଅବସାଦ ପୋଛି ହୋଇଯିବ ମନତଳୁ·····

ଡାକିଲାଙ୍କ ଚିଠିଟାକୁ ସଯତ୍ନରେ ଭାଙ୍ଗି ଥୋଇ ଦେଲ ଇନ୍ଦ୍ରଣୀ । ଚିଠିର ଶେଷରେ ଲୁହର ଦାଗ—ମୃଣ୍ମୟୀ କାନ୍ଦୁଥିଲ ବୋଧହୁଏ । ସବୁ ସବୁ ଓଠ ତଳେ ମିଳେଇ ଗଲ ପଦଏ କଥା । ହସିଲ ଇନ୍ଦ୍ରଣୀ । ବେଦନା ଜଡ଼ିତ ଧାରେ ହସ । ଏତେ ଦିନେ ତେବେ ମନେ ପଡ଼ିଲ ମୃଣ୍ମୟୀର·····ତା' ମନର ସବୁ ସ୍ୱପ୍ନ, ସବୁ ସୁରଭିତ କଳ୍ପନା ଲୁଟିନେଇ ନିଜକୁ ଇଚ୍ଛା ମୁତାବକ ଗଢ଼ିସାରିଲ ପରେ, ଆଜ ଅନେକ ଦିନପରେ ଇନ୍ଦ୍ରଣୀ, ପାଖରେ ସପେଇ ବାଡିବାକୁ ଆଗେଇ ଆସିଛୁ ମୃଣ୍ମୟୀ ।

ଚିଠିଟା ଉପରେ ପୁଣିଥରେ ଆଖି ବୁଲାଇ ଆଣିଲ ଇନ୍ଦ୍ରଣୀ । ସ୍ନେହ ଖଣ୍ଡିଏ ଚିଠି । ସେ ଦିନର ଗୋଲ ଗୋଲ ସୁନ୍ଦର ହସ୍ତାକ୍ଷର କେମିତି ବଙ୍କା ବଙ୍କା ହୋଇ ଆସିଲଣି । ସାଧା ସିଧା ଧାଡ଼ିକେତୋଟି ଅଥଚ ଯୁଗ ଯୁଗର ସେଇ ନର୍ମଳ ସଶ୍ରଦ୍ଧ ଆନ୍ତରିକତା । ପ୍ରତିଟି ଅକ୍ଷରରେ ସ୍ନେହ ମମତାର ଅଖଣ୍ଡ ଦାବୀ । ସତେକି ପାଞ୍ଚ ବର୍ଷର ମୃଣ୍ମୟୀର ଚିଠି ସେ ପଢ଼ୁଛି—

ଦୃଷ୍ଟି ସ୍ଥିର ହେଲା ଇନ୍ଦ୍ରଣୀର । ଆଜ ନୁହେଁ, ପାଖ ଦଶବର୍ଷ ତଳର ଅଜ୍ଞାତ ସଂଗୋପନରେ ପଦ ତୋଳୁଛି ସ୍ମୃତିର ପରଦାରେ । ଦୂର ସହରରେ ପାଠ ପଢ଼ୁଥିଲ ବେଳେ ସ୍ନେହ ତାଙ୍କୁ ଏମିତି ଚିଠି ଲେଖୁଥିଲ ମୃଣ୍ମୟୀ । ସେଇ ଗେହ୍ଲାଳିଆ ମମତାଭରା ଚିଠି ତାର ହାତଲେଖା ଅଙ୍କାବଙ୍କା ଦୁଇଟି ଧାଡ଼ିପାଇଁ ମନ ତଳର ସେ ଆବେଗ, ସେ ଉଦ୍ଦୀପନା ଏବେବି ମନେପଡ଼େ ଇନ୍ଦ୍ରଣୀର । ଲୁହର

ବାଦଲ ତଳେ ଯେମିତି ସେଇ ମୁହଁର ଅଙ୍କନ ଅସ୍ପଷ୍ଟରୁ ଅସ୍ପଷ୍ଟତର ହୋଇଉଠେ ।

ମୃଣ୍ମୟ ଆଜ ଦୂରରେ······ତା ଆଖିର ଲୁହ ଦେଖିବାକୁ ସେ ପାଖରେ ନାହିଁ । ଏ ଗୁପ୍ତ ତଳର କରୁଣ ଗୁଞ୍ଜରଣ ଆଜ ତା ପାଖରେ ପହଞ୍ଚିବ ନାହିଁ । ସେ ଆଜ ଆସିବ ନାହିଁ······କେବଳ ଅନିର୍ଦ୍ଦିଷ୍ଟ କାଳ ପାଇଁ ପାଖରେ ପଡ଼ିରହିଥିବ ନର୍ଜୀବ ବାର୍ତ୍ତାବହ ତାର ଶରୀର ।

ଧୂଳି ଆଜ ଆଶ୍ରୁସ୍ଥିରେ ରେଖାଙ୍କିତ ହୋଇ ଉଠିଲା ଇନ୍ଦ୍ରାଣୀର ମୁହଁ । ନୀରବ ନିର୍ଜନ ଏଇ ପ୍ରହରରେ ପ୍ରାଣର ସବୁତକ ସ୍ୱପ୍ନତନ୍ତ୍ରୀ ଗୁଞ୍ଜରି ଉଠିଲେ କି ଏକ ଅବ୍ୟକ୍ତ ବେଦନାରେ । ସତେ କ'ଣ କଲା ମୃଣ୍ମୟ······!!

କ୍ଷତ ବିକ୍ଷତ ମନତଳେ ଝିଲମିଲ ହୋଇ ଉଠୁଛି ସେ ଅତୀତ । ତୋଫାନିଆ ଧୂମାଳିଆ ଅତୀତ । ମନେ ପଡ଼ୁଛି ଗୋଟି-ଗୋଟି ହୋଇ ବୋଉର କଥା । ଚେଷ୍ଟାକରି ବି କିଛି ଭୁଲି ପାରୁନି ଇନ୍ଦ୍ରାଣୀ । ଜଳନ୍ତ ପ୍ରାଣତଳେ ଘୃତାହୁତି ଢ଼ାଳିବାକୁ ମନ ଉପକୂଳରେ ଭୁହାଇ ଭୁହାଇ ପିଟିହୋଇ ଯାଉଛି ସବୁ ସ୍ମୃତି ।

—"ତୁ ଠିକ୍ କହୁଛୁ ମା । ଦେଶ ଆଜ ଦଶର ସେବା କରିବାକୁ ଯିଏ ଯାଏ ସେ ଗୋଟିଏ ମା'ର ନୁହେଁ କୋଟିଏ ମା'ର" । ହେଲେ······ଏଇ ତୃପ୍ତି ତଳର ଏତେ ଝଡ଼, ଏତେ ଯନ୍ତ୍ରଣା ଆଜ ନିର୍ବାପିତ ହେଉନି ମା । ସେ ବେଦନା । ସେ ବ୍ୟଥା ଯୁଗ ଯୁଗର । ତୁ ଅନୁଭବ କରି ପାରିବୁ ନାହିଁ । କେହି ବୁଝି ପାରିବ ନାହିଁ ସେ ପ୍ରାଣର ବ୍ୟଥା······କିଏ ବୁଝିବ ଏ ମନର ଦାହ··· ??

ଆଖିରେ ବେଦନାର ସପ୍ତର୍ଷି ତୋଳି ମେଘ ଢନ ଅନେଇ ରହିଥିଲା ଇନ୍ଦ୍ରଶ୍ରୀ । ବୋଉର ଶେଷ ନିଶ୍ୱାସ ବାଜୁଥିଲା ତା ଛାତିରେ ! ମୃଣ୍ମୟ ହୁଏତ ହୋରି ଖେଳୁଥିବ ଭାରତସୀମାନ୍ତରେ ।

ସତକୁ ସତ ସେଦିନ ମୃଣ୍ମୟକୁ ଛାଡ଼ି ଅତିଷ୍ଠ ହୋଇ ଉଠିଥିଲା ଇନ୍ଦ୍ରଶ୍ରୀ । ଏମିତି ପଥର କେମିତି ହେଲା ମୃଣ୍ମୟ······ ତାର ହାତରେ ଗଢ଼ା, ତାର ସ୍ନେହ ମମତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ସୁକୁମାର ମୃଣ୍ମୟ ଲାଗି ସେଦିନ ଅହେତୁକ ମମତା ଭରି ରହିଥିଲା ଇନ୍ଦ୍ରଶ୍ରୀର ଛାତିରେ । କେବଳ ତାର ପାଇଁ······ ତାର ପାଇଁ କେବଳ ଜୀବନର ସବୁ ସୁଖ ସ୍ୱାଚ୍ଛନ୍ଦ୍ୟକୁ ଗୋଟି ଗୋଟି କରି ଜାଳି ଦେଇଛି ଇନ୍ଦ୍ରଶ୍ରୀ । ଜୀବନର ଗତି ହୋଇଛି ଭିନ୍ନମୁଖୀ । ବଦଳି ଯାଇଛି ଧାରା ।

କିନ୍ତୁ ଆଜି······ହତାଶ ଓ ବିବଶରେ ଭାଙ୍ଗି ପଡୁଛି ଇନ୍ଦ୍ରଶ୍ରୀ । ଲୁହରେଇ ଲୁହରେଇ ମନ ଉପକୂଳରେ ଉଠୁଛି ତାର କଥା । ବର୍ଷକା ଆଷାଢ଼ର ସେ ମର୍ମସ୍ପର୍ଶୀ ମୁହୂର୍ତ୍ତର କଥା, ସେଉଁଦିନ ପ୍ରାଣଭରେ ଅସୀମ ଆବେଗ ନେଇ ଯୁଦ୍ଧ ଫେରନ୍ତା ମୃଣ୍ମୟର ଚିଠି ସେ ଖୋଲିଥିଲା । ଚିଠିରେ ସ୍ପଷ୍ଟ ଲେଖି ଦେଇଥିଲା ମୃଣ୍ମୟ— "ମତେ ଏ ଯାଗାଟା ଭାରି ଭଲ ଲାଗୁଛି ଅପା, ପୁଣିଥରେ ସେ ଦୂଷିତ ବାୟୁମଣ୍ଡଳ ଭିତରକୁ ଫେରିଯିବା ପାଇଁ ତୁ ମତେ ଅନୁରୋଧ କରନା······" ।

ଛୋଟ କେଇଟି ଅକ୍ଷରକୁ ନିଚ୍ଛକ ଛଳନାରେ ମମତାର ପୁଟ ଦେଇ ମଧୁମୟ କରିଛି ମୃଣ୍ମୟ । ଆଉ ପଢ଼ିପାରି ନଥିଲା ଇନ୍ଦ୍ରଶ୍ରୀ । ଆଖିର ଲୁହରେ ଭିଜିଯାଇଥିଲା ଛୋଟ ସେଇ ଚିଠିଟା ।

ସେଇ······ସେଇ ମୃଣ୍ମୟ ପୁଣି ଆଜି ଚିଠି ଲେଖିଛି "ତୁ ଥରକ ପାଇଁ ଆସିବୁ ଅପା······ । କ'ଣ ହୋଇ ପାରେ ସ୍ୱାର ହଂଙ୍କ ?

× × ×

ସନ୍ଧ୍ୟାର ବହଳ ଅନ୍ଧାର ଭେଦ କରେ, ପଶିଲା ରମ୍ଭ । ଚିଠିଟା ହାତକୁ ବଢେଇ ଦେଇ ଦେଇ କହିଲା— ଏପର୍ଯ୍ୟନ୍ତ ଘରଟା ଅନ୍ଧାର ରଖିଛ ମା' ।

ନିଜର ଭାବନାରେ ନିଜେ ସଚେତନ ହୋଇ ଉଠିଲା ଇନ୍ଦ୍ରଶ୍ରୀ । ରମ୍ଭ ସୁଇଚ୍ ଟିପିଦେଇ ଗଲାଣି ।

ବିମୁଗ୍ଧ ଆଖି ତୋଳି ଚିଠି ଖୋଲିଲା ସେ । ମୃଣ୍ମୟ ଲେଖିଛି । ପୁଣି ଗୋଟାଏ ସପ୍ତାହ ପରେ—× × "ଜାଣିଥିଲେବି ମୁଁ ଗୃହି ରହିଥିଲି । ଭାବିଥିଲି ତୁ ଆସିବୁ । କିନ୍ତୁ ତୁ ଆସିଲୁନାହିଁ । ମନେପଡ଼େ ସେଇ ଗୋଟାଏ ଅବଶୋଷ, କେତେ କଥା ତୋତେ କହି ପାରିଲି ନାହିଁ । ଅକୁହା ରହିଗଲା କେତେ । ଯେଉଁତକ ଲେଖିବା ପାଇଁକି ମୋ ମନରେ ସେଦିନ ଏତେଟିକେ ଧୈର୍ଯ୍ୟ ନଥିଲା । ସେଇ ନିର୍ମମ ନିଷ୍ଠୁର ସତ୍ୟ ପଢ଼ିଥିଲେ ତୁ ହୁଏତ ବଞ୍ଚିବା ପାଇଁ ଧୈର୍ଯ୍ୟ ସଂଗ୍ରହ କରିପାରିନଥାନ୍ତୁ ସେଦିନ ।

—ଜନ୍ମମାଟିରୁ ଗୋଡ଼ ଉଠାଇ ଯେଉଁଦିନ ମୁଁ ଧାଇଁ ଆସିଥିଲି ଏଠିକି ସମସ୍ତଙ୍କର ଅବାଧ୍ୟ ହୋଇ, ସେଦିନ ମୁଁ ଜାଣି-ଥିଲି ଅପା, ସେ ଭୂଇଁରେ ମୋର ପାଦ ଆଉ ଦିତୀୟ ଥର ପାଇଁ ପ୍ରଡ଼ବନ୍ଧ । ଦୂରରେ ଅପସରି ଯାଉଥିଲା ତୋର ଅଶ୍ରୁଳ ଆଖି । ମନ କହୁଥିଲା ଆନ୍ତରିକତାର ଏସ୍ୱଚ୍ଛ ସଳଳ ଜୀବନରେ ଆଉ କେବେ ପଥାରୂଢ଼ ହେବନି ।

ଠିକ୍ ସେଇଆ ହେଲା । ଯୁଦ୍ଧ ଭୂଇଁରୁ ମୁ ଫେରି ଆସିଲି । କିନ୍ତୁ ହରେଇ ଦେଇ ଆସିଲି ମୋର ସର୍ବସ୍ୱ । ପଙ୍ଗୁ, ଚକ୍ଷୁହୀନ ଓ ନିଃସହାୟ ହୋଇ । ସେଇଥି ପାଇଁ ଛାତିକୁ ପଥର କରି ସେ

ଚିଠି ମୁଁ ଲେଖିଥିଲି ଅପା ······ । ନଲେଖି ଉପାୟ ନଥିଲା—ତୋ ଆଖିର ଲୁହ ମୁଁ ସହନ୍ତି କେମିତି······?

କିନ୍ତୁ ବାଧ ହେଲି । ଆଜ ନଲେଖିଲେ ମୁଁ ଆଉ ସମୟ ପାଇବ ନାହିଁ । ଯୁଗଯୁଗର ଅବିଶ୍ୱାସ ରହିଯିବ ତୋର । ଶିଖା ଲିଭି ଲିଭି ଆସିଲାଣି ତୈଳହୀନ ଏଇ ଜୀବନ ପ୍ରଦୀପରୁ । ମୁକ୍ତି ଲୋଡ଼ୁଛି ବାରବାର । ସେଇଥିପାଇଁ ଲେଖିଥିଲି । ଥରଟିଏ ଲାଗି ଲୋଡ଼ିଥିଲି ତୋତେ । ଭୁଲ୍ ବୁଝିବୁ ନାହିଁ, ତୋର ସେଇ ଅବାଧ ମୃଣ୍ମୟକୁ··· ଉଃ······ଅସହ୍ୟ ଯନ୍ତ୍ରଣା ଅ······ପା !!

ସ୍ଥାଣୁ ହୋଇ ଯାଉଥିଲା ଇତିଶ୍ରୀ । ହାତରେ ଚିଠି-ପ୍ରାଣ-ପ୍ରିୟ ମୃଣ୍ମୟର ଚିଠି······ପାଦତଳୁ ଖସି ଖସି ଯାଉଛି ମାଟିର ଚଟାଣ······ ।

—ଂ—

# ଓନୋଟି ନୀଳଚକ୍ଷୁର କାହାଣୀ

ଶ୍ରୀ ପ୍ରଦୀପ୍ତ କୁମାର ପତି
ପ୍ରଥମ ବାର୍ଷିକ କଳା

ବିଶ୍ୱାସକର, ଏ ପର୍ଯ୍ୟନ୍ତ ତୁମେହିଁ ମୋର କେନ୍ଦ୍ରବିନ୍ଦୁ । ମୁଁ ତୁମକୁ ଜ୍ୟାମିତି ପଢ଼ାଇବାକୁ ଯାଉନାହିଁ କିମ୍ବା କିଶୋର ଜୀବନର ହେନ୍ତୁ ଲୁପି ଛାପିକା ସ୍ମୃତିକୁ ଫେରାଇ ଆଣିବାକୁ ଚାହୁଁନାହିଁ । ତଥାପି ତୁମ ଆଖିରେ କୌତୁକର ବନ୍ୟା ? ପ୍ରକୃତରେ ନେପୋଲିୟନ ସମ୍ରାଟ ହୋଇପାରିଲେ ମାଳମା, କିନ୍ତୁ···ଗୋଟିଏ ନାରୀ ପାଇଁ···

ଯାଃ—ମୁଁ ପୁଣି ଜ୍ୟାମିତିରୁ ଆସି ଇତିହାସରେ ପହଞ୍ଚିଲିଣି । ମନେ ମନେ ହୁଏତ ଖାପଛଡ଼ା ବିରକ୍ତ ହେଉଥିବ । କିନ୍ତୁ ତୁମେ

ବୁଝିପାରିବ ନାହିଁ ମାଳମା, ଅଷ୍ଟାଦଶୀ ଠିକ୍ ଯେପରି ଗୋଟିଏ ଅଜୁଆ ସ୍ୱଭାବଟି । ମୁଁ ତୁମକୁ କହିବି ସେ ଅଜୁଆ ନଈରୁ କପରି ସୃଷ୍ଟା ବାହାର କଲି । ତେଣୁ·······

ଜନୋଟି ପ୍ରାଣର ସ୍ମୃତି ବାଞ୍ଛିରହିଥିଲା ଭଳି ମନେହୁଏ । ଏଁ ! କଏ କେଉଁଠି ଲୁଚିରହି ଦେଖୁଛନ୍ତି କି ? ମୁଁ ବର୍ତ୍ତମାନ ତୁମ ଆଗରେ କହୁଛି । ହେଲେ ସାବଧାନ ! ଏହା ଯେପରି ତୃତୀୟଟି କାନ ବ୍ୟକ୍ତିର ପାଖମକୁ ନଯାଏ ।

ଅନୁରାଧା, ମୋର ଜୀବନ ପରିଧି ମଧ୍ୟକୁ ଯାହାର ହୋଇଥିଲା ପ୍ରଥମ ଆଗମନ; ଏବେ ମଧ୍ୟ ସେ ମୋର ସ୍ମୃତିପଟରୁ ଦୂରେଇ ଯାଇନାହିଁ ଆଉ ମୋର ମନର ବେଳାଭୂମିରୁ ଲିଭିଯାଇ ନାହିଁ । ସେହି ବଣୁଆ ଅଞ୍ଚଳର ସବୁଜିମା, ଯେଉଁଠାରେ ଅନୁରାଧା ଓ ମୁଁ ଗଢ଼ିଥିଲୁ କେତୋଟି କଳ୍ପନାର ସୌଧ । ସେ ହୁଏତ ଥିଲା ମୋର ଗୋଟିଏ ସୌଭାଗ୍ୟ ଅବା ଦୁର୍ଭାଗ୍ୟ, ତାର ହିସାବ ମୁଁ କରିନାହିଁ କେବେ, ହେଲେ ତୁମେ ସାତମନ୍ଦ ହରଣ, ଗୁଣନ ପରେ ଆହୁରି କେତେକଣ ଜୀବନର ଜଟିଳ ଅଙ୍କକୁ ଗୃହୁଁଛ ସରଳ କରିବା ପାଇଁ । ହଉ ତେବେ ଶୁଣ ।

ଆଜକୁ ଛଅବର୍ଷତଳେ ଆଦ୍ୟପୌଷର ଏକ ସୁରଞ୍ଜିତ ସନ୍ଧ୍ୟାରେ ମୋର ପ୍ରଥମ ପରିଚୟ ହୁଏ ଅନୁରାଧା ସହିତ । ମୋର ଏକ ଦୂର ସଂପର୍କୀୟଙ୍କ ସହିତ ଭଞ୍ଜନଗରରେ ସେହି ଜନାସ୍ତୀର୍ଣ୍ଣ ଅଞ୍ଚଳରେ ଲକ୍ଷ୍ୟହୀନ ଭାବରେ ଭ୍ରମଣ କରୁ କରୁ ଆବିଷ୍କାର କରେ ଏକ କଳହାସିମୀ ଅରଣ୍ୟ ଝରଣା । ତୁମେ କେବେ ଝରଣା ଦେଖିଛ ? ଆଉ ଲକ୍ଷ୍ୟ କରିଛ ତାର ଚପଳତା ? ଠିକ୍ ସେଇଭଳି, ବିଦାୟ ବେଳାରେ ଲକ୍ଷ୍ୟକଲି ତା ମୁହଁରେ ଚେନାଏ ହସ । ବାସ୍, ଏତିକି, ତାହାହିଁ ମୋ ପକ୍ଷେ ଯଥେଷ୍ଟ, ପରେ ପରେ ମୋର ଦୂରସଂପର୍କୀୟା

ଲିଲି ମାଧ୍ୟମରେ ଗଢ଼ି ଉଠିଲା ଆମର ଶେଷହୀନ ସଂପର୍କ । ଆଜି କହିବାକୁ ସଂକୋଚ ନାହିଁ, ସେଦିନ ଆମେ ଆଶାକରିଥିଲୁ ଅନେକ କିଛି । ଦୁହିଁଙ୍କ ଅଜାଣତରେ ଦୁହେଁ ଦୁହିଁଙ୍କ ନିକଟରେ ସମର୍ପିତ ହୋଇସାରିଥିଲୁ ।

ସେଦିନ ହୋଇଥାଏ ସାଧାରଣ ତନ୍ତ୍ର ଦିବସ, ଜାନୁଆରୀ ୨୬ ତାରିଖ । ଯାହାପାଇଁ ଏବେ ବି ମୋ ଦେହରେ ରୋମାଞ୍ଚ ଜାତ ହୁଏ, କଣ୍ଟକିତ ହୋଇଉଠେ ମୋର ସର୍ବାଙ୍ଗ । ଲିଲି ସହିତ ଅନୁରାଧା ଆସିଥିଲା ମୋର ବିଶେଷ ନିମନ୍ତ୍ରଣ କ୍ରମେ । ଶ୍ରାନ୍ତ ଅପରାହ୍ଣର ଏକ ନିର୍ଜନ ପରିବେଶରେ ଅଦୂରସ୍ଥ କୃଷ୍ଣଚୂଡ଼ା ବୃକ୍ଷମୂଳେ ପରସ୍ପର ସଂଲଗ୍ନ ହୋଇ ବସିଥିଲୁ ଆମେ ଦୁଇଜଣ । ସେଦିନ ଥିଲା ଆକାଶରେ ଅନେକ ରଙ୍ଗ ଆଉ କୃଷ୍ଣଚୂଡ଼ା ଗଛରେ ଫୁଟିଥିଲା ଅନେକ ଫୁଲ । ହାତରେ ସେହି ଗନ୍ଧହୀନ ଫୁଲଟିଏ ଧରି ଅନୁରାଗ ଭରା କଣ୍ଠରେ ସେଦିନ ମୋତେ ପ୍ରଶ୍ନ କରିଥିଲା ଅନୁରାଧା ।

“ଆଚ୍ଛା ଜଗୁଲାଇ ! ଆମର ଏ କଳ୍ପନାର ତାଜମହଲ ଯଦି ଭୁଷୁଡ଼ି ପଡେ ! ଏବଂ ମୁଁ ଯଦି......”

ଚମକି ଉଠିଥିଲି ମୁଁ । ପାଗଳଙ୍କପରି ଚିତ୍କାର କରି ଉଠିଥିଲି— ନା— ନା ଅନୁ, ଆମର ଏ ବନ୍ଧନ ଯେ ଅତୁଟ । ତୁମେ ଅନ୍ତତଃ ଏ ବିଷୟରେ ନିଶ୍ଚିନ୍ତ ରୁହ” ।

ସେ ନିଶ୍ଚିନ୍ତ ହୋଇଥିଲା କି ନା ଜାଣେନା; କିନ୍ତୁ ଆମର ଆଶାର ସାଧ ପୂର୍ଣ୍ଣ ହୋଇପାରିଲାନି । ଭାଇଙ୍କର ଆକସ୍ମିକ ବଦଳିରେ ମୁଁ ଚାଲିଆସିଲି ବାଲେଶ୍ୱର କିନ୍ତୁ ଅନୁରାଧା ପାଇଁ ଛାଡ଼ିଆସିଲି ଅଶେଷ ସ୍ମୃତିରାଜି । ବିଦାୟ ବେଳରେ ଆସିଥିଲା ଅନୁରାଧା; ମନରେ କେତେ ଅକୁହା କଥା ଆଉ ଚକ୍ଷୁରେ କାରୁଣ୍ୟ ଭରି । କିନ୍ତୁ

ପାରିଲିନ; ପାରିଲିନି ସେ ସବୁକୁ ପ୍ରକାଶ କରି । ଶେଷ ମୂହୂର୍ତ୍ତରେ ମୁଁ ଦେଖିଥିଲି ତା ଆଖିରେ ଦୁଇଟୋପା ଲୁହ ।

ତାପରେ—

ନା ତା ପରେ ମୁଁ ତାର କୌଣସି ଖବର ରଖିନାହିଁ । ପ୍ରାପ୍ତ ଦୁଇମାସ ପରେ ପାଇଥିଲି ଅନୁରାଧାର ବିବାହ ଉପଲକ୍ଷେ ଖଣ୍ଡିଏ ନିମନ୍ତ୍ରଣ ପତ୍ର । କ୍ରମେ କ୍ରମେ ସେ ମୋର ସ୍ମୃତିର କାଳ ପରଦାରୁ ଅପସରି ଯାଇଥିଲା ।

ଅସୀମା— ଦ୍ୱିତୀୟ ବାର ଯାହାକୁ ମୁଁ ଆବିଷ୍କାର କରିଥିଲି ଅନୁରାଧା ରୂପରେ, ଯେ ମୋର ଅତୀତର ଛିନ୍ନ ଭିନ୍ନ ପୃଷ୍ଠାକୁ ସଜାଡ଼ି ରଖିଥିଲା ମୋ ଆଗରେ, ସେଇ ଅସୀମା ମଧ୍ୟ ଆଜି ବିସ୍ମୃତିର ଅତଳ ଗହ୍ୱରରେ ଲୀନ ହୋଇଯାଇଛି । କିନ୍ତୁ ସେ ମଧ୍ୟ ଦିନେ ମୋର ମନର ମୁକ୍ତ ବାତାୟନ ମଧ୍ୟକୁ ଏକ ଆକସ୍ମିକ ଝଟକାପରି ପ୍ରବେଶ କରିଥିଲା । କଲେଜ ଫେରନ୍ତା ରାସ୍ତାରେ ମୁଁ ସେଦିନ ପ୍ରଥମ କରି ଭେଟିଥିଲି ଅସୀମାକୁ । ଆଖିରେ ଅସଂଖ୍ୟ ପ୍ରଶ୍ନବାଚୀ-ଚେ ଠିଆହୋଇଥିଲା । ବୋଧହୁଏ ସେ ମୋ ନିକଟରୁ ତାର ଉପଯୁକ୍ତ ପ୍ରତ୍ୟୁତ୍ତର ଆଶା କରୁଥିଲା । ବାସ୍ତବିକ୍ ମୋର ଅନୁମାନ ଥିଲା ଅଭ୍ରାନ୍ତ । ଅନୁକୂଳ ପରିସ୍ଥିତିରେ ମୁଁ ପାଦ ପାଦ କରି ଆଗେଇ ଗଲି ।

"କ'ଣ ମୋ ଉପରେ ରାଗୁଛ ? କିନ୍ତୁ ତୁମେ କୁହତ, ଯଦି ତୁମେ ମୋ ସ୍ଥାନରେ ଥାନ୍ତ, ତେବେ ତୁମେ କି ଏହା କରି ନ ଥାନ୍ତ ? କାରଣ ଏହା ହେଉଛି ସଂସାରର ଏକ ବାସ୍ତବ ଧର୍ମ । ଆରେ ! ତାକୁ ମଧ୍ୟ ତୁମେ ଘୃଣା କରୁଛ ? ଉପଯାଚିକା ବୋଲି ଆକ୍ଷେପ କରୁଛ ? ତାର ଅତ୍ୟଧିକ ଚପଳତାକୁ ଲକ୍ଷ୍ୟ କରି ତାକୁ ଉଦ୍ଧଣ୍ଡୀ ବୋଲି ଅଭିହିତ କରୁଛ ?

କନ୍ତୁ—ତୁମେ କଣ ଚିହ୍ନିଥିଲ ତା'ର ହୃଦୟ ମଧ୍ୟରେ ଥିବା ଭାବକୁ ? ଅନ୍ତର୍ଭେଦୀ ଦୃଷ୍ଟିରେ କ'ଣ କେବେ ଲକ୍ଷ୍ୟ କରିଥିଲେ ତାକୁ ? ମୁଁ ତାକୁ ଠିକ୍ ଚିହ୍ନିଥିଲି । ତାର ସେହି ଉଦ୍ଧତ୍ତୀ ଭାବ ମଧ୍ୟରେ ଥିବା କୋମଳତାକୁ ତଳେ ତଳେ ଅନୁଭବ କରିଥିଲି । ସେଇଥି ପାଇଁ ତ ରାତ୍ର ୧୨ଟା ବେଳେ ଦୁଇ ଦୁଇଟା ଶ୍ମଶାନରେ ସତ୍ତ୍ୱ ଜୀବନର ମୁଁ ଧାଇଁଯାଇଥିଲି ଯକ୍ଷା ଦେଖିବା ପାଇଁ ଦୀର୍ଘ ୧୨ ମାଇଲ ରାସ୍ତା ଅତିକ୍ରମ କରି । କିନ୍ତୁ ପାରି ନଥିଲି । ସମାଜ ଗଲା ଆମ ବିରୁଦ୍ଧରେ, ଯାହାର ପରିଣତିରେ ସେ ମୋ ଠାରୁ ଦୂରେଇ ଯିବାକୁ ବାଧ୍ୟହେଲା ଦୁଇ ଟୋପା ଲୁହର ଶ୍ରଦ୍ଧାଞ୍ଜଳି ଦେଇ । ପରୀକ୍ଷା ଦେଇସାରି ଘରକୁ ଫେରିଯିବାର ବିଦାୟ ବେଳାରେ ମୋ ହାତରେ ଧରାଇ ଦେଇ ଯାଇଥିଲା ତାର ଏକ ନାମାଙ୍କିତ ରୁମାଲ, ତାର ସ୍ମୃତିର ଶେଷ ସମ୍ବଳ ଟିକକ । କିନ୍ତୁ ତାର ମଧ୍ୟ ଆଜି ସତ୍ତ୍ୱ ନାହିଁ । ସେ ବୋଧହୁଏ ମୋତେ ତା ସ୍ମୃତିପଟରୁ ବିଦାୟ କରି ଦେଇ ସାରିଲାଣି ।

ଏ କଣ ? ତୁମେ ଏପରି ଅଧୈର୍ଯ୍ୟ ହୋଇଉଠୁଛ କାହିଁକି ? ମୋର ଜୀବନର ଦୁଃଖମୟ ଘଟଣାଟିକୁ ଟିକେ ଶୁଣାଇଦେଲି ଯାହା କି ମୋର ଜୀବନର ଗତିପଥକୁ ପରିବର୍ତ୍ତିତ କରିଦେଇଥିଲା ଏକ ନୂତନ ଆଲୋକର ସନ୍ଧାନ ଦେଇ । ସେଥିପାଇଁ ମୁଁ ଅବଶ୍ୟ କବିତାକୁ ଅଶେଷ ଧନ୍ୟବାଦ ଦେଉଛି । କବିତାକୁ କିଏ ଜାଣିନ ? ଜାଣିମଧ୍ୟ ଲାଭ ନାହିଁ । ତେବେ ମୋତେ କହିବାକୁ କି ହେବ । ନାଁଟି ତର ଥିଲା କବିତା । ଖୁବ୍ ସୁନ୍ଦର ନାଁଟି; ନୁହେଁ ? ବାସ୍ତବକ୍ ତାକୁ ଦେଖିଲେ କେବଳ କବିତା ଲେଖିବାକୁ ମନହୁଏ ।

ନା-ନା- ଭୁଲ ବୁଝନା । ତା ମାନେ ନୁହେଁ ଯେ ମୁଁ ତା ନିକଟରେ ମୋର ଦୁର୍ବଳତା ପ୍ରକାଶ କରିଥିଲି । ସେ କେଉଁ ଏକ

ଦୁର୍ବଳ ମୁହୂର୍ତ୍ତରେ ହୋଇଥିଲା ତା'ର ମୋର ପରିଚୟ । ଧୀରେ ଧୀରେ ସଂପର୍କ ହୋଇଥିଲା ଘନିଷ୍ଠ । ଅନୁରାଧା ଓ ଅସୀମାର ସ୍ମୃତିକୁ ଜୀବନ୍ତ କରିବା ପାଇଁ କବିତା ମୋତେ ଯୋଗାଇଲା ଅନେକ କିଛି ଉପାଦାନ । କିନ୍ତୁ ନିଜେ ସଫଳ ହୋଇପାରିଲାନି ।

ଆଚ୍ଛା, ତୁମେ କେବେ ଦେଖିଛ ଗୋଟିଏ ଫୁଟନ୍ତା ଗୋଲାପ ? ସେ ରହିଗଲା ଠିକ୍ ସେଇ ଫୁଟନ୍ତା ଗୋଲାପ ପରି ମୋର ଜୀବନ ପରିଧିରେ । ମୋର ଅଜାଣତରେ ମୁଁ ତା ନିକଟକୁ ଟାଣି ହୋଇ ଯାଇଥିଲି, ଠିକ୍ ଚୁମ୍ବକ ପରି । ତୁମେ କେବେ ଚୁମ୍ବକ ଦେଖିଛ ମାଳମା ? କିନ୍ତୁ ମୁଁ ବିଜ୍ଞାନ ଛାତ୍ର ନୁହେଁ, ତେଣୁ ଚୁମ୍ବକ ସମ୍ବନ୍ଧରେ ବିସ୍ତୃତ ବାଖ୍ୟା ମୁଁ କରିପାରିବିନି । ହୁଏତ ସ୍କୁଲର ବିଜ୍ଞାନ ଶ୍ରେଣୀରେ ବସି କିଛିଟା ମନଦେଇ ଶୁଣିଥିଲେ ହେଲେ ଜାଣିଥାନ୍ତି । କିନ୍ତୁ ଆମର ସମସ୍ତ କଳ୍ପନା କେବଳ କଳ୍ପନାରେ ହିଁ ରହିଗଲା । ଆମେ ହାରିଗଲୁ, ଆଉ ପଛଘୁଞ୍ଚା ଦେଲୁ ପରସ୍ତ ସେ ନିକଟରୁ । କିନ୍ତୁ କବିତା ! ମନରେ ଅନେକ ଆଶା, ଅନେକ ସ୍ୱପ୍ନ ନେଇ ସେ ଆଗେଇ ଆସିଥିଲା ମୋ ନିକଟକୁ । ହୁଏତ ଆଶା କରିଥିଲା ମୋର ସାନ୍ନିଧ୍ୟରେ ଆସି ସେ ରୂପଦେବ ତା'ର କଳ୍ପନାର ତାଜମହଲରେ । କିନ୍ତୁ ତା ହୋଇ ପାରିଲା ନାହିଁ, ସେ ଫେରିଗଲା କେବଳ ଗୁଡ଼ାଏ ଦୁଃଖ ଓ ଅନୁଶୋଚନାକୁ ବହନ କରି । ଥାଉ, ସେସବୁ ଆଉ ମନେ ପକାଇ ଲାଭ ନାହିଁ । ଅନୁରାଧା, ଅସୀମା, କବିତା ଯେପରି ଆକସ୍ମିକ ଭାବରେ ମୋର ଜୀବନପରିଧି ମଧ୍ୟରେ ଦେଖା ଦେଇଥିଲେ, ସେହିପରି ଆକସ୍ମିକ ଭାବରେ ବିଦାୟ ନେଇଛନ୍ତି । କିନ୍ତୁ ମୋ ମନରେ ଆଙ୍କି ଯାଇଛନ୍ତି କେବଳ ଗୋଟିଏ ଗୋଟିଏ ଅଲିଭା ଦାଗ ।

ସବୁକିଛି ଶୁଣିଲ ମାଳମା, ତିନୋଟି ହୃଦୟର ଗହନ କଥାକୁ ତୁମେ ଶୁଣିଲ । ସେମାନେ କେହିହେଲେ ମୋର ହୃଦୟକୁ

ଏତେ ଦୁର୍ବଳ କରିପାରିନଥିଲେ ଓ ଏପରି ଭାବରେ ଜାଣିପାରି ନଥିଲେ । କିନ୍ତୁ ତୁମେ—ତୁମେ ତାହାର ଏକ ବ୍ୟତିକ୍ରମ; ସତକହୁଛି ମାଳମା, ସମସ୍ତ ସମୟରେ ମନେହୁଏ ଯେପରି ମୋର ମାନସ ରାଜ୍ୟର ତୁମେ ସର୍ବମୟ କର୍ତ୍ତ୍ରୀ । ଆଉ ତୁମେ ମଧ୍ୟ ଜାଣନା ମାଳମା, ଜାଣିବାକୁ ଚେଷ୍ଟା ମଧ୍ୟ କରନାହିଁ । ମାଳମା, ଆଜ ମୋ ଜୀବନର ସବୁଠୁଁ କଷ୍ଟର ଗୋଟିଏ ଅଧ୍ୟାୟ ସାରିଦେଲି । ଏବେ କୁହ, ଆଉ କ'ଣ ଅକୁହା ରହିଗଲା ତୁମର ସନ୍ଦେହୀ ମନଟିରେ ।

ତୁମେ ତ ଜାଣ, ସବୁନାରୀ ସମାନ ନୁହଁନ୍ତି । କିନ୍ତୁ ସବୁନାରୀ ପ୍ରାୟ ଗୋଟିଏ ଗୁଣରେ ସମାନ । ଏ କ୍ଷେତ୍ରରେ ସେମାନେ ଚାହାନ୍ତି ମନୋପଲି ଅର୍ଥାତ୍ ଏକଚାଟିଆ ବ୍ୟବସାୟ । କିନ୍ତୁ ଯଦି ତାଙ୍କର ଏହି ମନୋପଲିରେ ଅନ୍ୟ କେହି ଅଂଶ ଗ୍ରହଣ କରେ, ତାହାହେଲେ ସେମାନେ ତିଳ ତିଳ ହୋଇ ଦଗ୍ଧ ହୁଅନ୍ତି ସନ୍ଦେହର ବାଣରେ ।

ଦେଖ, ନଅଟା ଉପରେ ଘଣ୍ଟା କଣ୍ଟା ରହିଲାଣି । ଚନ୍ଦ୍ର ମଧ୍ୟ ଆକାଶର ବହୁତ ଉପରକୁ ଉଠିଲାଣି । ହୁଏତ କେଉଁ ଦୂର ସରୋବରରେ କୁମୁଦ ମନଭରି ହସୁଥିବ । ଠିକ୍ ତୁମେ ଯେପରି ହସ ।

ଆଃ-ଏବେ ହସନା !



# ଅନୁଶୋଚନା

ଅଲେଖ ଚନ୍ଦ୍ର ପଟ୍ଟନାୟକ

ପ୍ରଥମ ବାର୍ଷିକ ବିଜ୍ଞାନ

* * * * * * *

ଏମିତି ଚାଲିଛି । ଦିନେ ଅବା ମାସେ ନୁହେଁ, ବର୍ଷ ବର୍ଷ, ଶତାବ୍ଦୀ ଶତାବ୍ଦୀ ଓ ଯୁଗ ଯୁଗ ଧରି, ସମୟର ଚକ୍ର ସାଥିରେ କେତେ ଯେ ମଣିଷ ପେଷି ହୋଇଛନ୍ତି— କେତେ କେତେ ଗର୍ବିତ ମସ୍ତକ ଓ ଗଗନ ଚୁମ୍ବୀ ଦର୍ପର ଅବସାନ ଘଟିଛି । ଦିବସର କୋଳାହଳକୁ ଉପେକ୍ଷା କରି ଗୋଧୂଳି ମିଶି ଯାଇଛି ସନ୍ଧ୍ୟାର ଧୂସରସ୍ତୂପରେ । ସନ୍ଧ୍ୟାର କଳୁଷ ଓ କାଳିମା ପୋଛି ଧୂସରସ୍ତୂପ ମିଶିଯାଇଛି ଘନକୃଷ୍ଣ ରଜନୀର ନିସ୍ତବ୍ଧତା ମଧ୍ୟରେ । ତାହାର ମଧ୍ୟରୁ ପୁଣି ଜନ୍ମ ନେଇଛି ଆଲୋକର ଉଜ୍ଜ୍ୱଳମୟ ପ୍ରଭାତ । ଏଇ ମାଟି, ଏଇ ପାଣି, ଏଇ ପବନ, ମଣିଷ ମନକୁ ଆକୃଷ୍ଟ କରିଛି; ଦେହ ଓ ମନ ଭିତରେ ସଂଯୋଗ ସ୍ଥାପନ କରିଛି ନିବିଡ଼ଭାବେ । ସୃଷ୍ଟିର ସୌନ୍ଦର୍ଯ୍ୟରେ ସେ ଯେପରି ଉତ୍ଫୁଲ୍ଲ ହୋଇଛି ସେହିପରି ପ୍ରକୃତିର ପ୍ରଳୟରେ ଶିହରି ଉଠିଛି । ବସନ୍ତର ମାୟାରେ କେତେ ଯେ ଧରଣୀ ପଲ୍ଲବିତ, କୁସୁମିତ ହୋଇଛି । ଠିକ୍ ସେହିପରି ବସନ୍ତର ତାଣ୍ଡବଲୀଳାରେ ଅଗଣିତ ଜୀବନ ପ୍ରଦୀପ ଲିଭି ଯାଇଛି । କେତେ ରକ୍ତିମ ଅଧରର ହାସ୍ୟ ରେଖା ଲିଭି ଯାଇଛି ରକ୍ତ ଗୋଲାପର ବିସର୍ଜନ ପରି । ଆଉ କେତେ ଜୀବନର ଇନ୍ଦ୍ରଧନୁ ଆଙ୍କି ଉଠିଛି ମୃତ୍ୟୁର ନୀଳ-ଆକାଶରେ ।

ଆଜ ବି ନିରୂପମା ଅତୀତକୁ ବିଶ୍ଳେଷଣ କରୁଛି । ଆଖିରେ ତାର ଉଙ୍କି ମାରୁଛି ଘାଣ୍ଟି ଦିନର ଶ୍ରାବଣ । ଆଜ ବି ସେ ଭାବୁଛି—"ପଥଭ୍ରାନ୍ତ ମଣିଷ ହୃଦୟର ଦାବାଗ୍ନି ନିର୍ବାପିତ କରିବା ପାଇଁ ସ୍ଥଳୟର ପ୍ରଭଞ୍ଜନ ବହିପରେ, ପୁଣି ସେହି ପ୍ରଭଞ୍ଜନ ଯେଉଁ ମଳୟର ହିଲ୍ଲୋଳ ସୃଷ୍ଟି କରେ ତାହା ମଣିଷ ହୃଦୟକୁ ତିଳେ ତିଳେ ଦଗ୍ଧୀଭୂତ କରେ ।"

ପ୍ରଭାତର କଅଁଳ ରଶ୍ମି ଉପହାର ଦେଇ ଦିନେ ନବ-ମାସଟି ସ୍ୱାଗତ ଜଣାଇଥିଲା ନିରୂପମାକୁ ନୂତନ ଉଦ୍ଦୀପନା ଓ ଉନ୍ମାଦନା ନେଇ । ଶିଥିଳ ଗନ୍ଧବାହ ପରଶରେ ହୃଦୟରେ ତାର ବାସନା ଜାଗିଥିଲା । ଅଗଣିତ ଶିକ୍ଷାବିତ୍‌ଙ୍କ ହୃଦୟରେ ଯେଉଁଠି ଆନନ୍ଦ ଓ ଆଶାର କଳକଲ୍ଲୋଳିନୀ ପ୍ରବାହିତ ହୁଏ, ଯେଉଁଠି ଗ୍ରୀଷ୍ମର ସୂର୍ଯ୍ୟ ଶ୍ୱେତରଶ୍ମି ବିସ୍ତାର୍ଣ୍ଣ ହୁଏ ପୀଠସ୍ଥଳୀର ପରିବେଶକୁ ମୁଖରିତ କରି······ ସେଇଠି ସେହି ଶିକ୍ଷା ଓ ସଭ୍ୟତାର ସ୍ଥାନ 'ସମାବର୍ତ୍ତନ ଉତ୍ସବ'ରେ ନିରୂପମାର ସାକ୍ଷାତ୍ ହୁଏ ଶେଖର ସହିତ । ଆନନ୍ଦରେ ଉତ୍‌ଫୁଲ୍ଲିତ ହୋଇ ଶେଖର ଯାଇଥିଲା ସେଠାକୁ ତାହାର ମାଷ୍ଟର ଡିଗ୍ରୀ ଆଣିବା ପାଇଁ, ଆଉ ନିରୁପମା ଯାଇଥିଲା ତାର ଗ୍ରାଜୁଏସନ୍ ଡିଗ୍ରୀ ଆଣିବା ପାଇଁ । ସେଇଠି ହୁଏ ଉଭୟଙ୍କର ସାକ୍ଷାତ ଓ ପଦେ ଦୁଇପଦ କଥାବାର୍ତ୍ତା ।

ସମସ୍ତ ଗଡ଼ି ଚାଲିଛି, ଧନୀର ଦୁଲାଳୀ ନିରୂପମା ଅତି ଆନନ୍ଦରେ ଦିନ ଗୁଡ଼ିକ ଅତିବାହିତ କରୁଥାଏ । ବାହାର ପରିବେଷ୍ଟନୀ ଠାରୁ ସେ ଥାଏ ଯଥେଷ୍ଟ ଦୂରରେ । ସୁଖ ସମ୍ପଦକୁ ଉପହାସ କରି ଆସିଥାଏ ପ୍ରଳୟଙ୍କରୀ ବନ୍ୟା । ବନ୍ୟା ପ୍ରପୀଡ଼ିତ ଅଭିଶପ୍ତ ଜନତାକୁ ସାହାଯ୍ୟ କରିବା ପାଇଁ ଏକ ଘାଣ୍ଟି ପ୍ରୋସେସନରେ ବାହାରି ଆସିଥାନ୍ତି କେତେକ କର୍ମୀ ଭିକ୍ଷା ସଂଗ୍ରହ ଉଦ୍ଦେଶ୍ୟରେ । ନରେଶ ଥାଏ

ସେମାନଙ୍କ ମଧ୍ୟରେ ଜଣେ । ପ୍ରୋସେସନ୍ ଗୋପବନ୍ଧୁ ଲେନ୍ ଅତିକ୍ରମ କରିବାକୁ ବସିଲାଣି । ଏକ ନୂତନ ପ୍ରାସାଦରୁ ଏକ ଭଦ୍ରମହିଳା ଆସି ଶେଖରର ଭିକ୍ଷା ପାତ୍ରରେ ଟଙ୍କାଟିଏ ଠଣ୍ କରି ପକାଇ ଦେଇ ଚାଲିଗଲା । ନରେଶ ପାଟିର ବାଷ୍ପପରି ବାହାରି ଆସିଲା 'ନିରୂପମା' । ଭଦ୍ରମହିଳା କିନ୍ତୁ ଶୁଣି ନଶୁଣିଲା ପରି ନୀରବ । ପୂର୍ଣ୍ଣଥରେ··· ନିରୂପମା ! ଏଥର କିନ୍ତୁ ଆଭିଜାତ୍ୟ ଠାଣିରେ ନିରୂପମା ମୁହଁଟା ବୁଲାଇ ନେଇ ଚାଲିଗଲା ସେଠାରୁ । ଶେଖର ଦୀର୍ଘ ନିଃଶ୍ୱାସ ପକାଇଲା । ଏହା ତାର ଭାବନାର ନୂଆ······ସମୀକ୍ଷାର !

ଦିନ ଗଡ଼ି ଚାଲିଛି ଇତି ମଧ୍ୟରେ ନିରୂପମା ମନରେ ପରିବର୍ତ୍ତନ ଆସିଛି । ନିଷ୍ଠୁର ଅତୀତକୁ କେତେଥର ମୁହୂର୍ତ୍ତ ସେ ଭୁଲିଯିବା ପାଇଁ ଚେଷ୍ଟା କଲେ ସୁଦ୍ଧା ଭୁଲି ପାରୁନି । ବରଂ ତାହା ତାକୁ ଆତୁରି ଭାବନା ରାଜ୍ୟରେ ବିପର୍ଯ୍ୟସ୍ତ କରି ପକାଉଛି । ଅପରାଧି ପରି ମନ ଗଗନରେ ତାର ବିଷାଦର ମେଘମାଳା ଉଦୟ ହୋଇଛି । ଭାବୁଛି ନିଜର ଭୁଲ ପାଇଁ ଶେଖର ନିକଟକୁ ପତ୍ର ଲେଖିବ, କିନ୍ତୁ ଲେଖି ପାରୁନାହିଁ । ଚୀନ୍‌ର ଆକ୍ରମଣ ଭାରତୀୟମାନଙ୍କ ମଧ୍ୟରେ ଏକ ଜାଗରଣର ବହ୍ନି ସୃଷ୍ଟି କରିଛି । ନିରୂପମା ଜାତିପ୍ରାଣତାରେ ଉଦ୍‌ବୁଦ୍ଧ ହୋଇଛି । ଶେଖର ପଦାତିକ ବାହିନୀର ଏକ କମାଣ୍ଡର ରୂପେ ନିଯୁକ୍ତି ପାଇ ଯୁଦ୍ଧକୁ ଯାଉଛି । ତାକୁ ବିଦାୟ ସମ୍ବର୍ଦ୍ଧନା ଜଣାଇବା ପାଇଁ ତାର କେତେଜଣ ଲୋକ ପ୍ଲାଟ୍‌ଫର୍ମକୁ ଯାଇଛନ୍ତି । ନିରୂପମା ମଧ୍ୟ ସେମାନଙ୍କ ମଧ୍ୟରେ ରହିଛି । ନିରୂପମାକୁ ହଠାତ୍ ଦେଖି ଶେଖର କ୍ରୋଧାନ୍ୱିତ ହୋଇପଡ଼ୁଛି । ନିରୂପମା ହଠାତ୍ ଶେଖରର ହସ୍ତଧରି କହିପକାଇଛି "ମୋତେ ଭୁଲ ବୁଝନା ଶେଖର ଭାଇ, ମୁଁ ସତ୍‌ପଥକୁ ଫେରିଆସିଛି । ଧର୍ମର କନ୍ୟା ରୂପେ ଆନନ୍ଦରେ ବଢ଼ି ଦୁନିଆଁର ସୁଖ, ଦୁଃଖ କଣ

ଦେଖି ନ ଥିଲି । ସେଥିପାଇଁ ମୁଁ ତୁମକୁ ଘୃଣାକରି ମହାନ୍ ଅପରାଧ କରିଛି । କିନ୍ତୁ ମୋର ସେ ଗର୍ବସେତୁ ଭାଙ୍ଗି ଯାଇଛି ।"

ତଥାପି ଶେଖର କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରି ନାହିଁ । ସେ ଭାବୁଛି ଧନୀମାନେ ପରଦା ପିନ୍ଧି ମନ ଭୁଲାଇବା ପାଇଁ ବେଶ୍ ଅଭିନୟ କରି ଜାଣନ୍ତି । ସେମାନଙ୍କୁ ବୁଝିବା ଅନୁଚିତ୍ । କିଛି ସମୟ ପରେ ସମସ୍ତଙ୍କଠାରୁ ବିଦାୟ ନେଇ ଉଠିଲା ଟ୍ରେନ୍‌କୁ । ନିରୁପମାର ଛଳ ଛଳ ଆଖିକୁ ଶେଖରର ଦୃଷ୍ଟି ପଥରୁ ଦୂରକୁ ଯାଇନାହିଁ । ଟ୍ରେନଟି ଚାଲିଛି ହର୍ଣ୍ଣ ଦେଇ ଦୁରଦୁରାନ୍ତକୁ । ତାହାର ନିବଦ୍ଧ ଦୃଷ୍ଟି ରହିଛି ସେହି ଆଡେ କ୍ଷୀଣରୁ କ୍ଷୀଣତର ହୋଇ ।

ନିରୁପମା ଏଥର ଅତିମାତ୍ରାରେ ଦେଶପ୍ରେମୀ ହୋଇ ପଡିଛି । ସେ ବିଭିନ୍ନ ସାମାଜିକ ଅନୁଷ୍ଠାନ ସହ ସଂପୃକ୍ତ ହୋଇପଡ଼ିଛି, ପିତାଙ୍କ ବିବାହ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଇଛି । ସମ୍ବାଦ ଶୁଣିବା, କାଗଜ ପଢ଼ିବା ଓ ଦେଶ ବିଦେଶର ଖବର ରଖିବାରେ ତାର ଅଫୁରନ୍ତ ଆନନ୍ଦ । କୋହିମା ସୀମାନ୍ତରେ ରଣ ଦୁନ୍ଦୁଭି ତାର ହୃଦୟରେ କମ୍ପନ ସୃଷ୍ଟି କରୁଛି । ଆଖି ଆଗରେ ତାର ନାଚି ଉଠୁଛି କୋହିମା ସୀମାନ୍ତରେ ଯୁଦ୍ଧ ଭୂମିର ଦୃଶ୍ୟ । କେତେ ଅଜଣା ଦେବତାଙ୍କ ଚରଣ ତଳେ ସେ ଗୋପାଳି ଜାଳି ମଥା ନୋଇଁଛି ଶେଖରର ମଙ୍ଗଳ କାମନା କରି । କେତେ ନିଶିଥିନୀର ଘନ ଘଟା ସୁରେ ସୁରେ ସେ ଅସୁମାରି ସ୍ୱପ୍ନ ଦେଖିଛି ।

× + ×

ଏକ ଶୁଭ୍ର ପ୍ରଭାତ । ସେ ଦିନ ପଲ୍ଲୀର ସବୁଜିମା ଉପରେ ସୂର୍ଯ୍ୟ ବିଛାଡ଼ି ଦେଇଛନ୍ତି ମୁଠା ମୁଠା ସ୍ୱର୍ଣ୍ଣାଭ କିରଣ । ସେ ଦିନର ଦୃଶ୍ୟ ଉପଭୋଗ୍ୟ ହେଲେ ସୁଦ୍ଧା କାହିଁକି ଉଦାସ ପରି ଜଣା ପଡୁଥିଲା

ନିକଟ ବଗିଚାରୁ ପେଚାଟାର ଅଶୁଭ ସୂଚକ ରଡ଼ ମନରେ ଶିହରଣ ସୃଷ୍ଟି କରୁଥିଲା । ପେପରବାଲା ନିଅରବାଏ ଖବରର ତାର ଦୈନନ୍ଦିନ କାର୍ଯ୍ୟରୁ ପେପର ଦେଇ ଚାଲିଗଲା । ନିରୁପମା ପଢ଼ୁ ନ ପଢ଼ୁଣୁ ହଠାତ୍ ତାର ଆଖି ଅଟକି ଗଲା ଗୋଟିଏ ସ୍ଥାନରେ— "ଶେଖର ପଟ୍ଟନାୟକଙ୍କ ଶୋଚନୀୟ ମୃତ୍ୟୁ" ସମ୍ବାଦରେ ସେ ଦୁଃଖରେ ମ୍ରିୟମାଣ ହୋଇପଡ଼ିଲା, ଗୁହ୍ମ ଗୁହ୍ମ ଖଦଡ଼ ଶାଢ଼ୀଟା ଆର୍ଦ୍ର ହୋଇଗଲା ଆଖିର ଲୋତକରେ । ଅକ୍ଷରକୁ ସେ ବିଶ୍ଳେଷଣ କରୁଥାଏ । ପୃଷ୍ଠାରେ ଚିତ୍ରପଟ ଉପରେ ଦୃଷ୍ଟି ନିକ୍ଷେପ କରୁଥାଏ ।

ଏଇ ସେଇ ଚିତ୍ରପଟ, ଏଇ ଆଖି...... ଏଇ ନେଇ ଶାନ୍ତ ସୌମ୍ୟ ଗାମ୍ଭୀର୍ଯ୍ୟପୂର୍ଣ୍ଣ ମୁଖ ମଣ୍ଡଳ ଅନ୍ତରର ବେଦନା ତାର ଅନ୍ତରରେ ଜନ୍ମିଗଲା । କେହି ଜାଣି ପାରିଲେ ନାହିଁ ନିରୁପମାର କଣ ହେଲା ! ଆଜି ବି ସେ କାନ୍ଦୁଛି—ଖୁବ୍ ନିବିଡ଼ ଭାବେ...... ଆଶାର ବାଦଲ ତାର ପାଣି ଫାଟି ଯାଇଛି, ତାର ଚିବୁକକୁ ଲୋତକ ସିକ୍ତ କରି । ସେ ଲୋତକ ବିରହର ନୁହେଁ । ବିଚ୍ଛେଦର ନୁହେଁ, ନୁହେଁ ଆନନ୍ଦର, ସେ ହେବା ପ୍ରେମର, ଦୁଃଖ ଓ ପରିତାପର ସେ ଅନୁଶୋଚନାର ।



# ବନାନୀର ଶେଷ ପତ୍ର

ଦିଲ୍ଲୀପ କୁମାର ମହାନ୍ତ
ଦ୍ୱିତୀୟ ବାର୍ଷିକ କଳା

ଆଗକୁ ଆଗକୁ ଆହୁରି ଚାଲିଲେ ଆମେ ହୁଏତ ଗୋଟିଏ କୋଳାହଳ ମୁଖର ପରିବେଶକୁ ଛାଡ଼ି ଆଉ ଏକ ନୂତନ ଶାନ୍ତ, ସରଳ ପରିବେଶ ମଧ୍ୟରେ ପହଞ୍ଚିବା । ଏହି ପରିବେଶଟି

ଖୁବ୍ ମନୋରମ, ଏଠାରେ ଚିମିଣିର ଧୂଆଁ ନାହିଁ, ଗାଡ଼ି ମଟର ପେଟ୍ରୋଲ ଗନ୍ଧ ନାହିଁ, ଧୂଳି ମଣ୍ଡଳ ନାହିଁ—ଏ ଗୋଟିଏ ପଲ୍ଲୀ ପ୍ରକୃତିର ବାସ୍ତବ ଚିତ୍ର, ଏଠି ମାଟିରୁ ରସ ଟାଣି ଗୋଲାପ ଗଛରେ ଗୋଲାପ ଫୁଟେ, ଏଠି ନାଗ ତାର ଫେଣା ଭିତରେ ସୁନ୍ଦର ଦିଶେ, ପ୍ଲାଷ୍ଟିକ ଗୋଲାପର ଆଦର ଏଠି ନାହିଁ, ଲିପଷ୍ଟିକ କ୍ରିମର ପ୍ରୟୋଜନ ଏଠି ଅନୁଭୂତ ହୁଏନା ଏଠି ସିନେମା ନାହିଁ, ଥିଏଟର ନାହିଁ, ଅଛି କେବଳ ଶ୍ୟାମଳ କ୍ଷେତ, ସେଥିରେ ହେଉଁ ହସ ଫୁଟେ ସେ ହସ କୌଣସି ସୁନ୍ଦରୀ ଝିଅର ସବୁ ପ୍ରକାର ଲୋଭନୀୟ ହସଠାରୁ ଆହୁରି ଭଲ, ଯଥେଷ୍ଟ ସୁନ୍ଦର ।

ଏଠି ଗୋଟିଏ ପୋଖରୀ, ସେ ପୋଖରୀରେ ପଦ୍ମ, ପ୍ରଜାପତି, ଅସଂଖ୍ୟ ଭ୍ରମର, ନୀଳ ଜଳ । ହେମନ୍ତର ଆସିବା ବେଳ ହେଲଣି —ପଦ୍ମ ବିଚଳିତ । ଏମିତି ଏମିତି ହେମନ୍ତ ଆସିଲା; ପଦ୍ମ ସମସ୍ତ ପ୍ରକାର କୌଶଳ ପ୍ରୟୋଗ କଲା କିନ୍ତୁ ହସିଲା ନାହିଁ । ମଫସଲ ଠିକ୍ ଏହିପରି । ଏଠାରେ ପ୍ରୟୋଜନ ନାହିଁ, ସାମୟିକ ଉତ୍ତେଜନା ନାହିଁ । ମଫସଲରେ ସମସ୍ତେ ଏହିପରି ଶୁଙ୍ଖିଯିବେ ଉଦ୍‌ବେଗରେ ନାହିଁ ।

ଏଇ ପଲ୍ଲୀରେ ପୁଣି ଶୀତ ଆସିଛି । କି ବଳ କି ପ୍ରାକ୍ରମ ଏ ଶୀତର ! ଗଡ଼ି ଜମ୍ମୁ କରିଛି ଶୀତ ସମସ୍ତଙ୍କ ଦେହରୁ ସାମର୍ଥ୍ୟ ଲୁଟି ନେଇଛି । ସହର ଶିବିରର ନିୟମ ଭଳି, ଶୀତର ନିର୍ଦ୍ଦେଶରେ ପ୍ରଥମ ହ୍ରଦର ସ୍ୱର୍ଣ୍ଣିରୁ ପ୍ରତ୍ୟେକଙ୍କ ଘରେ ଆଲୁଅ ନିଭେ । ତର ସବୁଜ ପତ୍ରଗୁଡ଼ିକ ଏଇ ଶୀତର ପ୍ରାଦୁର୍ଭାବରେ ନିଷ୍ପ୍ରଭ, ନିସ୍ତେଜ । ମୁରବି ମାନଙ୍କର କଡ଼ା ନଜରରେ ପିଲାମାନେ ଶଙ୍କି ଗଲାପରି ଶୀତର ତାଗିଦରେ ପତ୍ର ସବୁ ଝଡ଼ିବାକୁ ଲାଗିଲେଣି । ସତେ ଏଇମିତି ସବୁ ପତ୍ର ଝଡ଼ିଯିବେ !

ଏଇ କେତେ ଦିନ ହେଲା ଏଇଯେ ପତ୍ରଟି କେତେ ଆଶା ଆକାଂକ୍ଷା କାମନା ନେଇ-ତାର କକ୍ଷ ବିସ୍ତାର କରିବାକୁ ବସିଥିଲା,

ତାହାର ପୁଣି କଣ ହେବ ? କି ସୁନ୍ଦର ସେ ପତ୍ର , କିସୁନ୍ଦର ତାର ରଂଗ କି ସୁନ୍ଦର ତାର ଅଙ୍କନ । ତାର ସମସ୍ତ ବୃନ୍ତାଂଶ ମଧ୍ୟ ସୁନ୍ଦର, ସୁନ୍ଦର ତାର ରେଖାଗତ । ଦିନକୁ ଦିନ ଏହାର ରୂପ ଲୋଭନୀୟ ହେଉଅଛି । ଅଂଗ ବୃଦ୍ଧି ମଧ୍ୟ ତାକୁ ବେଶ ସୁନ୍ଦର କରି ଗଢୁଛି । ଏ ପତ୍ର ଝଡ଼ିଯିବ ? ନା ନା ଏ ପତ୍ର ଝଡ଼ିବନି, ଏତେ କଅଁଳ ମନୋରମ ପତ୍ରଟି ଝଡ଼ିଯିବ ! ଏ ଶୀତର କଣ ସ୍ନେହ ନାହିଁ, ମମତା ନାହିଁ, ପ୍ରେମ ନାହିଁ ଦୟା ନାହିଁ·········ସମାଜର କର୍ତ୍ତବ୍ୟ ସମ୍ବନ୍ଧରେ ବୋଧହୁଏ ଏହାର ସାଧାରଣ ଜ୍ଞାନ ନାହିଁ ।

ହେମନ୍ତ ଆକାଶରେ ତାରକାର ଯାତ୍ରା ଥିଲା । ମାଳମାର ପ୍ରତ୍ୟେକ ଶୋଭା ସଂପଦ ପରିଷ୍କାର ଭାବେ ପରିଦୃଷ୍ଟ ହେଉଥିଲା । ଚନ୍ଦ୍ରମନରେ ଯେତେ ଯେତେ କାମନା ସେ ସବୁ ଜ୍ୟୋତ୍ସ୍ନାର ପ୍ରଭାବରେ ପ୍ରତିଫଳିତ ହେଉଥିଲା । ସନ୍ଧ୍ୟା ହେବାରୁ ଆରମ୍ଭ କରି ରାତିର ଶେଷ ପ୍ରହର ପର୍ଯ୍ୟନ୍ତ ସାମାନ୍ୟ ଶୀତର ଲହର ପ୍ରବାହିତ ହେଉ ଥିଲା । ପଦ୍ମର କୋମଳଅଙ୍ଗ ଏ ଶିଶିରପାତକୁ ସହିନପାରି ଜୀବନ ତ୍ୟାଗ କରିଥିଲା । ତାପରେ ଶୀତ । ଏ ଶୀତର ପ୍ରତ୍ୟେକ ପଦକ୍ଷେପ ପ୍ରତି ଶରୀରରେ କମ୍ପନ ସୃଷ୍ଟି କରୁଛି । ନୀଳନ ଆକାଶ କୁହେଳି ଘେରି ସକଳ ପଲ୍ଲୀଶ୍ରୀ ଶୀତାର୍ତ୍ତ । ପ୍ରତ୍ୟେକ ପ୍ରାଣରେ ସ୍ପନ୍ଦନ । ପ୍ରତି ଶରୀରରେ ମୃଦୁରକ୍ତ ପ୍ରବାହ । ଏଇ ଶୀତର ପ୍ରାକର୍ମ ନିକଟରେ ସମସ୍ତେ ନତ ମସ୍ତକ ହୋଇ ଆତ୍ମସମର୍ପଣ କରୁଛନ୍ତି ଜୀବ, ଜନ୍ତୁ, ପ୍ରାଣୀ ବୃକ୍ଷଲତା ସମସ୍ତେ ।

ଏଇ ପତ୍ରଟି କିନ୍ତୁ ସତେଜ । ଅନ୍ୟ ପତ୍ର ସବୁ ଝରି ଗଲେଣି । ଏ ପତ୍ରରେ ଯୌବନ ଅଛି, ଯୁବତ୍ୱ ଅଛି, ରକ୍ତ ଅଛି, ଉତ୍ତାପ ଅଛି, ଉତ୍ତେଜନା ମଧ୍ୟ ଅଛି । ଶୀତର ସମସ୍ତ ଅସ୍ତ୍ରକୁ ପ୍ରତିରୋଧ କରିବାର ସାହାସ ରଖି ଏ ପତ୍ର ସବୁବେଳେ ପ୍ରସ୍ତୁତ ଅଛି । କମ୍ବା ଯୁଦ୍ଧ ହୁଂକାର ହାରି ନ୍ହିଁ ଜଖମ ହେବାର ଅଭିଳାଷ ଏ ରଖିଛି ।

ନଗର ପୁର ପଲ୍ଲୀର ପ୍ରତ୍ୟେକ ପ୍ରାନ୍ତ ଶୀତାକ୍ରାନ୍ତ । ସବୁଜ ବନାନୀର ସବୁଜମେଳା ନଷ୍ଟ ଭ୍ରଷ୍ଟ । ବନ ବୀଥିରେ ମର୍ମର ନାହିଁ । ଗୋଟାଏ ମହାଯୁଦ୍ଧର ଅବସାନ ପରେ ହୁଏତ ଏ ଗୋଟାଏ ରଣାଙ୍ଗନ ଯେଉଁଠି ଖାଲି ଶବ ଆଉ ଶବମାନ ପଡ଼ିରହିଛି । ପ୍ରାଣନାହିଁ, ସ୍ପନ୍ଦନ ନାହିଁ, ଜୀବନ ନାହିଁ, ନାହିଁ ସ୍ୱର । ସେହି ରଣାଙ୍ଗନ ମଧ୍ୟରୁ ଏ ପତଙ୍ଗଟି ପ୍ରତ୍ୟକ ଅସ୍ଥିରୁ ସଂଗ୍ରହ କରୁଥିଲା ବଳ । ପ୍ରତ୍ୟକ ମଜ୍ଜାରୁ ସଂଗ୍ରହ କରୁଥିଲା ଜୀବକୋଷ ।

ଶୀତ ହୁଏତ ସୃଷ୍ଟିର ସଂହାର ପାଇଁ ଅବତୀର୍ଣ୍ଣ ହୋଇ ଅଛି । ସେ ଆଜ ହତ୍ୟା କରୁଛି ପ୍ରତ୍ୟେକ ପତଙ୍ଗକୁ ବିବର୍ଣ୍ଣ କରୁଛି ପ୍ରତ୍ୟେକ ସୌନ୍ଦର୍ଯ୍ୟକୁ, ବିନଷ୍ଟ କରୁଛି ପ୍ରତ୍ୟକ ଶକ୍ତିକୁ । ଶିଥିଳ କରୁଛି ପ୍ରତ୍ୟେକ ରକ୍ତ କଣିକାକୁ ।

ଶୀତର ସଂହାରୀ ପଦକ୍ଷେପ ଆହୁରି ଦ୍ରୁତ ଏବଂ ଆହୁରି ଦ୍ରୁତ ହେଲା । ମହା ସମର ପାଇଁ ସଜ୍ଜିତ ଥିବା ପ୍ରତ୍ୟକ ରକ୍ଷୀ ଚତୁର୍ଦ୍ଦିଗ ଭ୍ରମଣ କରି ଜୀବିତାଂଶର ସନ୍ଧାନ କରୁ କରୁ ଏ ପତଙ୍ଗଟିର କମନୀୟତା ଦେଖିଥିଲେ । ବେଶ ସୁନ୍ଦର ଏ ପତଙ୍ଗଟି । ଫାଶୀଖୁଣ୍ଟକୁ ଚଢାଇବା ଲୋକର ମଧ୍ୟ ହୃଦୟ ଅଛି । ଏବଂ ସେ ହୃଦୟରେ ମମତାର ସ୍ଥାନ ଅଛି । ରକ୍ଷୀମାନେ ନାରୁର—ଶୀତର ହୁକୁମ ମାନିବାକୁ ପଡ଼ିବ ।

ଏ ପତଙ୍ଗଟିର କଳା ହରଣ ହେଲା, ଦମ୍ଭ ଭାଙ୍ଗିଲା, ସୌନ୍ଦର୍ଯ୍ୟ ମଉଳିଲା, ଗଛୁ ପତ୍ର ଝରିବାକୁ ଲାଗିଲା । ସେ ଦେଖିଥିଲା ତା ଆଗରେ ଲକ୍ଷେ ସୁନ୍ଦର ପତଙ୍ଗର ମଉଳା ଦେହ; ଲକ୍ଷେ ଫୁଲର ବାସ୍ନାହୀନ କଳେବର । ସେଖାଲି ସେମାନଙ୍କୁ ହିଁ ଚାହିଁଥିଲା ।

ବନାନୀର ଶେଷପତ୍ର ଝରିଗଲା, କାହାର ଆଖିରୁ ହୁଏତ ତାହାପାଇଁ ଅଶ୍ରୁ ଟିକିଏ ଝରିବାକୁ ସେ କହିଗଲା ନାହିଁ । ତା ପାଇଁ ସମବେଦନା ଜଣାଇବା ପାଇଁ ହୁଏତ କେହି ନଥିଲେ ।

---